# ଶାରଳାଭିଜ୍ଞା ।

ଭାରତବାସୀ ଇତିହାସ ଲେଖାରେ ଚିରକାଳ ଅନଭ୍ୟସ୍ତ ତେଣୁ ସଂସ୍କୃତ ସାହିତ୍ୟରେ ଜୀବନଚରିତର ଏକାନ୍ତ ଅଭାବ ଲକ୍ଷିତ ହୁଏ । ତାହା ବୋଲି ଯେ ସର୍ବବିଧ ଜ୍ଞାନର ଆଦିଲୀଳାଭୂମି ଏହି ଭାରତବର୍ଷରେ ଧ୍ୟାନ ଧାରଣାଶାଳୀ ଆର୍ଯ୍ୟଗଣଙ୍କ ଦ୍ୱାରା ସାମାନ୍ୟ-ଶ୍ରମସାଧ୍ୟ ଜୀବନଚରିତ ଆଦୌ ଲିଖିତ ହୋଇନାହିଁ, ଏମନ୍ତ ନୁହେ ।

ଜାତମଣିକା ।

ପ୍ରାଚୀନ ଆର୍ଯ୍ୟମାନେ ଆଧୁନିକ ଢଙ୍ଗରେ ଜନ୍ମ-ମରଣାଦିର ବର୍ଷମାସଦିନ ନିର୍ଦ୍ଦେଶପୂର୍ବକ ଜୀବନଚରିତ ଲେଖିବାକୁ ଶ୍ରେୟସ୍କର ମଣୁ ନ ଥିଲେ ; ସେମାନେ ସେହି ସବୁ ଅବାନ୍ତରକଥା ପରିତ୍ୟାଗ କରି ଜୀବନର ଯାହା ଶ୍ରେଷ୍ଠାଂଶ ଅର୍ଥାତ୍ ଯାହା ମୃତ୍ୟୁର ପୂର୍ବ ଏବଂ ପର କାଳରେ ଏକାପରି ଥାଏ, କେବଳ ତାହା ବିବୃତ କରୁଥିଲେ । କାରଣ ସେମାନେ ଏହା ଦୃଢ଼ରୂପେ ଜାଣିଥିଲେ ଯେ କାଳପରି ଯଥାର୍ଥ ଇତିହାସ ଲେଖକ ଆଉ କେହି ନାହିଁ । ତାହାଦ୍ୱାରା ଯାହା ଗୃହୀତ ହୋଇନାହିଁ ସେ କଥା ଲେଖି ଫଳ କଣ ? ଲୋକଶିକ୍ଷାର୍ଥ ମହାପୁରୁଷମାନଙ୍କର ଗୁଣଗ୍ରାମ ଓ କୀର୍ତ୍ତିକଳାପର ସବିସ୍ତାର ବର୍ଣ୍ଣନ ଏବଂ ଆଦର୍ଶ ଚରିତ୍ରର ମହତ୍ତ୍ୱ ପ୍ରଦର୍ଶନ ସେମାନଙ୍କ ଦ୍ୱାରା ରଚିତ ମାନବଚରିତର ପ୍ରତିପାଦ୍ୟ ବିଷୟ । ପୁରାଣରେ ଏପ୍ରକାର ବିଷୟମାନ ବିବୃତ ଏବଂ ସଂରକ୍ଷିତ ହୋଇଥିବାରୁ ସଂସ୍କୃତରେ ପୁରାଣଙ୍କୁ ଇତିହାସ ଆଖ୍ୟା ପ୍ରଦାନ କରାଯାଇଅଛି । ଏହି ପୁରାଣାଦି ଆମ୍ଭମାନଙ୍କ ପ୍ରାଚୀନ ସମାଜର ଇତିହାସ ରୂପେ ରକ୍ଷିତ ହୋଇଥିଲେ ହେଁ ତାହା ଆଧୁନିକ ଇତିହାସ ଲକ୍ଷଣାକ୍ରାନ୍ତ ନୁହେ । ସେଥିରେ

ଅତିରଞ୍ଜନ ଏବ ଅମାନୁଷୀକ କ୍ରିୟା ବର୍ଣ୍ଣନର ମାତ୍ରା ଯେପରି ସୀ ବର୍ଣ୍ଣିତ ଘଟନାବଳୀର କାଳନିରୂପଣର ଅଭାବ ସେହିପରି ବନାଗୀତ । ବ୍ୟକ୍ତି ବିଶେଷର ଅନ୍ଧ ମାସ ଷ୍ଟଉବାକୁ ଅଭ୍ୟାସ ବା ଶେଷରେ ଆର୍ଯ୍ୟମାନେ ସମାଜର ଇତିହାସକୁ ଏତେ ବିଶୃଙ୍ଖଳ କରି ପକାଇଲେ ଯେ, ଅନେକସ୍ଥଳରେ ବର୍ଣ୍ଣିତ ଘଟନାବଳୀ ଆନୁପୂର୍ବିକଭାବରେ ନ ଲେଖି ଭବିଷ୍ୟତ୍ ବଂଶଧରମାନଙ୍କୁ ଘୋର ଅନ୍ଧକାରରେ ଅବା ମୋହଜାଲରେ ନିକ୍ଷିପ୍ତ କରି ଅଛନ୍ତି ।

ବସ୍ତୁତଃ ଆମ୍ଭମାନଙ୍କ ଦେଶର ଏବ ସମାଜର ଅତୀତ ଅନ୍ଧକାରମୟ । ତଥାପି ଏହି ଅନ୍ଧକାର ଗର୍ଭରେ ଆମ୍ଭେମାନେ ତାମ୍ରଲିପି ପ୍ରାଚୀନ ଦେବାଳୟାଦିର ଭଗ୍ନାବଶେଷ କିଂବଦନ୍ତୀ ପ୍ରଭୃତି ମଣି ଜ୍ୟୋତିର ସାହାଯ୍ୟରେ ଅତୀତର ଯତକିଞ୍ଚିତ୍ ଆଭାସ ପାଉଅଛୁଁ । ଏହି ସବୁ, ଅତୀତ ବିଷୟ ଜାଣିବା ପାଇଁ ଆମ୍ଭମାନଙ୍କର ସମ୍ବଳ । ଅତଏବ ଅତୀତ ବିଷୟମାନଙ୍କ ଆଧୁନିକ ଇତିହାସ ଲକ୍ଷଣାକ୍ରାନ୍ତ କରିବାକୁ ହେଲେ ଲେଖକମାନଙ୍କୁ ଆଗେ ଏହିସବୁର ସାହାଯ୍ୟରେ ଏବ ପ୍ରବ କାବ୍ୟନାଟକାଦିର ପାଠଦ୍ୱାରା ସତ୍ୟ ସଂଗ୍ରହ କରିବାକୁ ହେବ । ଯେତିକି ସେ ବିଷୟରେ ଅଧିକ ଅଗ୍ରସର ହେବେ ସେ ସେତିକି କୃତକାର୍ଯ୍ୟ ହେବେ, ଏଥିରେ ସନ୍ଦେହ ନାହିଁ ; କିନ୍ତୁ ଏପ୍ରକାର ସୁବିଧା ଲେଖକଙ୍କୁ ସବୁସ୍ଥଳରେ ମିଳେ ନାହିଁ । ଯେଉଁ ସ୍ଥଳରେ ଏପରି ଅଭାବ ପଡ଼େ, ସେଠାରେ ଇତିହାସ ଲେଖକମାନେ ଅନୁମାନଦ୍ୱାରା ଗୋଟିଏ ସିଦ୍ଧାନ୍ତ କରିଥାନ୍ତି ; ମାତ୍ର ସେପ୍ରକାର ନିର୍ଣ୍ଣୟ ଉପରେ ବିଶ୍ୱାସ ସ୍ଥାପନ କରିବା ନିରାପଦ ନୁହେଁ । କାରଣ ପ୍ରମାଣାନ୍ତର ମିଳିବାପର୍ଯ୍ୟନ୍ତ ତାହାର ସ୍ଥିରତା । ଏହିପରି ଅନୁମାନ କରି ଲେଖିବାଦ୍ୱାରା ଐତିହାସିକମାନେ ଅନେକସ୍ଥଳରେ ଆମ୍ଭମାନଙ୍କୁ ଭ୍ରମରେ ପକାଇଥାନ୍ତି ବିଶେଷତଃ ବୈଦେଶିକ ଲେଖକମାନେ ଏ ଦେଶର ଇତିହାସ ସଂଗ୍ରହ କରି ଥିବାରୁ ସେମାନେ ଅନେକ ସ୍ଥାନରେ ଲୌକିକ ସାହାଯ୍ୟ

ପ୍ରମାଣର ଅଭାବରୁ ଅନୁମାନ କରି ଅନେକ କଥା ଲେଖିଅଛନ୍ତି [illegible] ଏ ଦେଶରେ ଇତିହାସରେ ଭ୍ରମ ପ୍ରମାଦ ବହୁଳ ଲକ୍ଷିତ ହୁଏ । ସୁତରାଂ ଗୋଟିଏ କଥା ଯେଣି ନାନାମୁନିଙ୍କର ନାନାମତ ପ୍ରଚଳିତ ହୋଇଅଛି ।

ଅମ୍ଭେମାନେ ବର୍ତ୍ତମାନ ଏଠାରେ ଯେଉଁ ବିଷୟର ଅବତାରଣା କରୁଅଛୁଁ, ସେଥିରେ ମଧ୍ୟ ମତଭେଦ ଅଛି । ଜଣେ ଦୁଇଜଣ ବୈଦେଶିକ ଐତିହାସିକଙ୍କର ମତ ଅନୁସରଣ କରି ଅମ୍ଭେମାନେ ପ୍ରମାଣ ନ ଲୋଡ଼ି ଅଖିବୁଜି ସ୍ୱଦେଶର ଅନେକ ପ୍ରକୃତ କଥାକୁ ଅନ୍ୟପ୍ରକାର କହି ଆସୁଅଛୁଁ । କୌଣସି ଲେଖକ ଆଜି ଶାରଳାଦାସଙ୍କୁ କେହି ତିନିଶତ ବର୍ଷ ପୂର୍ବବର୍ତ୍ତୀ, କେହି ମହାଭାରତର ଅନୁବାଦକ କେହିବା ରାଜା ବୀରକିଶୋର ଦେବଙ୍କ ଅନୁଗ୍ରହପ୍ରାପ୍ତ ବୋଲି କହି ତାଙ୍କୁ ଇତସ୍ତତଃ କରନ୍ତେ ! ଓଡ଼ିଶାର ପ୍ରସିଦ୍ଧ ଇତିହାସ ଲେଖକ ହଣ୍ଟର ସାହେବ ଉପେନ୍ଦ୍ରଭଞ୍ଜ ଏବଂ ଶାରଳାଦାସଙ୍କୁ ଏକକାଳୀନ ବୋଲି ନିର୍ଦ୍ଦେଶ କରିଅଛନ୍ତି ।* ଶାରଳାଦାସ ଭଞ୍ଜଙ୍କ ସମକାଳୀନ ନୁହନ୍ତି, କିଂବା ମହାଭାରତର ଅନୁବାଦକ ନୁହନ୍ତି । ଲେଖକଙ୍କର ଉଭୟ ମତ ଭ୍ରାନ୍ତିସଙ୍କୁଳ, ଏହାଛଡ଼ା ଅନ୍ୟାନ୍ୟ କବିଙ୍କ ସମ୍ବନ୍ଧରେ ସେ ଯାହା ପ୍ରକାଶ କରିଅଛନ୍ତି ତନ୍ମଧ୍ୟରୁ ଅନେକ ମତ ଭ୍ରାନ୍ତ, ଏଥି ଲାଗି ଅମ୍ଭେମାନେ ତାଙ୍କଠାରେ ପୂର୍ଣ୍ଣ ଦୋଷାରୋପ କରୁନାହୁଁ । କାରଣ ସେ ବୈଦେଶିକ ଥିବାରୁ ଆଉ ଏଦେଶର ଭାଷା ଉତ୍ତମରୂପେ ଅଭ୍ୟସ୍ତ କରି ନଥିବାରୁ ଉକ୍ତବିଷୟରେ ଯଥେଷ୍ଟ ପ୍ରମାଣ ସଂଗ୍ର

---

Sarala Das Kavi—Lived 300 years ago and translated the Mahabharat into Oriya.

Upendrabhanja—A Raja of the Gumusar, and the most eminent of all the Oriya poets; lived 300 years ago. History of Orissa Vol. II Page 208—9

ସଂଗ୍ରହ କରିବାକୁ ସମର୍ଥ ହୋଇନାହାନ୍ତି । ସୁତରାଂ ସେ ଏଦେଶୀ ଲୋକଙ୍କ ଠାରୁ ଯାହା ଯେପରି ଶୁଣିଲେ ତାହା ସେହିପରି ଲେଖି ଗଲେ । କିନ୍ତୁ ଏସମସ୍ତ ଭ୍ରମର ସଂଶୋଧନ ଅସ୍ମାଦୃଶ ଆଳସ୍ୟପରାୟଣ ଏବଂ ଅନୁସନ୍ଧାନବିମୁଖ ଜାତିର ବହୁକାଳ ସାପେକ୍ଷ ।

ଶାରଳାଦାସଙ୍କ ଆବିର୍ଭାବ କାଳ ।

ଏଥିପୂର୍ବେ ଆମ୍ଭେମାନେ ଉଲ୍ଲେଖ କରିଅଛୁଁ ଯେ, କିଂବଦନ୍ତୀ ତାମ୍ରଫଳକ ମୃତବ୍ୟକ୍ତିର ସମାଧି ପ୍ରାଚୀନଗ୍ରନ୍ଥ ପୁରାତନ ଦେବାଳୟାଦି ଇତିହାସ ସଂଗ୍ରହର ଉପକରଣ । ଆମ୍ଭେମାନେ ଏହିଠାରେ ସେହି-ପରି କେତୋଟି ଉପକରଣ ଦେଇ ପ୍ରମାଣ କରିବୁଁ ଯେ ଶାରଳାଦାସ ତିନି ଶତ ବର୍ଷରୁ ଅଧିକ ପୂର୍ବର କବି । ଉପେନ୍ଦ୍ରଭଞ୍ଜଙ୍କ କଥା ଛେଣିକି ଥାଉ ଭକ୍ତକବି ଜଗନ୍ନାଥଦାସ ମଧ୍ୟ ତାହାଙ୍କର ପରବର୍ତ୍ତୀ । ଅହୁରି ମଧ୍ୟ ତାହାଙ୍କ ଲେଖାରେ ଶୁଣିପି, ହୋଇପି, ଗଲୁ ପ୍ରଭୃତି କ୍ରିୟାର ବହୁଳ ବ୍ୟବହାର ଦେଖିଲେ ମନେ ହୁଏ ତାହା ପ୍ରାକୃତରୁ ଉତ୍ପନ୍ନ ଓଡ଼ିଆର ଶୈଶବକାଳ । ଓଡ଼ିଆ ଭାଷା, ଖୃଷ୍ଟିର ପ୍ରଥମ ଓ ତତ୍ପରବର୍ତ୍ତୀ ଶତାବ୍ଦୀରେ ଅବଶ୍ୟ ପ୍ରାକୃତବହୁଳ ଥିଲା ବୋଲି ଅନୁମାନ ହୁଏ । ଏହି ମହାଭାରତର ଭାଷା ତହିଁର ସାକ୍ଷ ଦାନ କରୁଅଛି । ତେବେ ତାହା ଏଦେଶବାସୀମାନଙ୍କର ସଂସ୍କୃତପ୍ରିୟତା ଏବଂ ପ୍ରାକୃତଦ୍ୱେଷିତା ପ୍ରଭାବରୁ କ୍ରମଶଃ ରୂପାନ୍ତରିତ ହୋଇ ସଂସ୍କୃତର ଅଭିମୁଖୀନ ହୋଇ ଆଧୁନିକ ଆକାର ଧାରଣ କଲା । ତଥାପି ଉଲ୍ଲିଖିତ ଶିଶୁତ୍ୱ ବା ଅପକ୍ୱତା ତିରୋହିତ ହେବାକୁ ପ୍ରାୟ ଅର୍ଦ୍ଧ-ଶତାବ୍ଦୀରୁ ଊଣା ଲାଗି ନଥିବ । ଶାରଳା ଦାସଙ୍କ ମହାଭାରତ ପାଠ କଲେ ସ୍ପଷ୍ଟ ଜଣାଯାଏ ସେଥିର ଭାଷା ଅତି ପ୍ରାଚୀନ । ତହିଁର ଅନେକ ଶବ୍ଦ ପୂର୍ବତନ ପାଲି ବା ପ୍ରାକୃତରୁ ସଦ୍ୟଜାତ ପରି ବୋଧ ହୁଏ । ଉତ୍କଳର ପ୍ରାଚୀନ ସାହିତ୍ୟରେ ସେ ପ୍ରକାର ପ୍ରୟୋଗ ଅଛି

ମିଳକ । ଗୋଟିଏ ଦୃଷ୍ଟାନ୍ତ ଏହି, ସଂସ୍କୃତ ଜଗତ୍ ଓ ନାଥ ଶବ୍ଦ ଅପଭ୍ରଷ୍ଟ ହୋଇ ପାଲି ଓ ପ୍ରାକୃତରେ ଯଥାକ୍ରମେ ଜଗଂ ଓ ନାହ ହୋଇଅଛି । ଆମ୍ଭମାନଙ୍କ ପ୍ରାଚୀନ ସାହିତ୍ୟରେ ଜଗଂ ଏବଂ ବର୍ତ୍ତମାନ ସାହିତ୍ୟରେ ମଧ୍ୟ ନାହର ସ୍ୱତନ୍ତ୍ର ବ୍ୟବହାର ଅଛି; ମାତ୍ର ଏକାଠି ଜଗନ୍ନାଥ ପରିବର୍ତ୍ତରେ 'ଜଗୁନାହା'ର ବହୁଳ ବ୍ୟବହାର ଶାରଳା ମହାଭାରତ ଭିନ୍ନ ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ସେହିପରି ଏଥିରେ ନଖ ସ୍ଥଳରେ 'ନହ' ଅଭଙ୍ଗ ସ୍ଥଳରେ 'ଅହଙ୍ଗ' ଇତ୍ୟାଦି ପ୍ରକାର ପ୍ରୟୋଗର ପ୍ରାଚୁର୍ଯ୍ୟ ମଧ୍ୟ ଭାଷାର ପ୍ରାଚୀନତାଜ୍ଞାପକ । ଉଦାହରଣସ୍ୱରୂପ ବନ ପର୍ବରେ "ଦଶ ନହ ମୁଦେଁ ଭୟ କରେ ପରଣାମି ପୃ ୯୦ 'ଅହଙ୍ଗେ ଯାନ୍ତ୍ରେଣ ସେହି ରଜାର ଭୂମାଗ୍ର" ପୃ ୬୯ ଉଦ୍ୟୋଗ ପର୍ବରେ 'ଝଟ ଅନରୂପ ବକାଣିଲେ ଜଗୁନାହା' ପୃ ୬୧ । ସେହିପରି 'ପ୍ରଚ୍ଛନ୍ଦନ କରଇ ସେ ଉଚ୍ଚହ (ଭୈରବ) ତାଣ୍ଡବ' ଦଃ ପଃ ପୃ ୧୮ 'କଣୟ (କନକ) ମୟୂରଥରେ ଉଚ୍ଛିନ୍ନ ପାତାଙ୍ଗ, ବଃ ଦଃ ପୃ ୧୬୮ । 'ଗମନ୍ତ ସେ ରହ (ରଥ) ବରେ ପୁଷ୍ପକ ସଦୃଶେ' ସ୍ୱଃ ପଃ ଇତ୍ୟାଦି । ଏତଦ୍‌ବ୍ୟତୀତ ନିମ୍ନଲିଖିତ ପ୍ରକାର ପ୍ରୟୋଗମାନ ଏହି ମହାଭାରତରେ ପରିବ୍ୟାପ୍ତ । ସେ ପ୍ରକାର ଶବ୍ଦର ବ୍ୟବହାର ଜଗନ୍ନାଥ ଦାସୀୟ ଅଥବା ତତ୍‌ପୂର୍ବବର୍ତ୍ତୀ ସାହିତ୍ୟରେ ଆମ୍ଭେମାନେ ପ୍ରାୟ ଦେଖି ପାରୁଁ ନାହିଁ । ଯଥା;—(୧) ଘାନ୍ତି (ଘାତଶବ୍ଦଜ) ବା ଥର ଅଧିକାର 'ଘାଟି' ଶବ୍ଦଟି ବୋଧହୁଏ ଏହା ପରେ ସୃଷ୍ଟ) ପଷାନ୍ତ (ପ୍ଳୋତ୍)

---

† ଲଗଢ ବସ୍ତ୍ର ଦେଶ ।

‡ କଗୁଜବକ ବାଣରଥ, ଜାନକୀଦେବୀ ପ୍ରାଣପତି-'ବନଲସେଚନ ।

(୧) ଏଘାନ୍ତ ପୁଣ ଘୋଃ ନାଣ ନ କଥବ—ଅ, ପ, ପୃ ୧୪
ଘାନ୍ତ ଏ ପେଟିରୁ ନହ ସୋଷକୁ ଗିଳବ—ବ, ପ ପୃ ୮

ତତ୍‌କ୍ଷଣାନ୍ତ (ତତ୍‌କ୍ଷଣାତ୍) ଇତ୍ୟାଦ । (୩) ଗମ୍ଭୀରେଣ, ଯାନ୍ତେଣ, ତୋହରେଣ, ସଙ୍ଗରେଣ, କ୍ଷ୍ମନ୍ତେଣ ଇତ୍ୟାଦ । (୪) ସବୁନ୍ତ (ସବୁଟି) ଅମ୍ଭନ୍ତ (ଅମ୍ଭଠିଁ) ଏତେନେକ (ଏମନ୍ତ) ତୋହର ଥାନ୍ତେ (ତୁ ଥାଉ)। ଅମ୍ଭର ଥିଲେ (ଅମ୍ଭେ ଥିଲେ) ଇତ୍ୟାଦ । (୫) ଅନ୍ତି, ଶୁଣସି କରସି, ନ ଏସି ଇତ୍ୟାଦ । [୬] ପୂଅନ୍ତ [ପୃଥକ୍] ଅମ୍ଭମାନନ୍ତ ଦେବନ୍ତ, ବଶିଷ୍ଠନ୍ତ, ଦେବତାନ୍ତ ଇତ୍ୟାଦ ସ୍ଥଳରେ ଦ୍ୱିତୀୟା ବଭକ୍ତିର ଅକାର 'ନ୍ତ' ଥିବାର ଅମ୍ଭେମାନେ କେବଳ ଏହି ଷାରଳା ମହା-ଭାରତରୁ ବହୁ ପରିମାଣରେ ଦେଖୁଅଛୁଁ । ବଶେଷତଃ ତୋତେ ମୋତେ ସ୍ଥଳରେ ତୁକୁ, ମୁକୁ ଏବ ତୋହରେଣ, ମୋହରେଣ

---

(୩) ଏମନ୍ତେଣ କଥା ତୁ ହୋ ଶୁଣ ନୃପମଣି—ଅ, ପ,
ଯାନ୍ତେଣ ଯେ ଦେଖି କ ପାରବ ଅଲ ମ୍ଭୁ—ପୃ ୩୮
ତୋହରେଣ ଗଳି ଅପେ ହୋଇନ୍ତୁଁ ଯେ ଅମ୍ଭେ—
ଡାକେଣ ନର୍ଜିର ସେ ମାନେଣ ଚକ୍ରବର୍ତ୍ତୀ ।
ଜ୍ଞାନେଣ ଚନ୍ତିଲ ସେ ଚାଉ ମହାମତ—ପୃ ୧୭
ବ୍ୟାସ ବନେ କଲେ ଅପି ବାରୁଣାବନ୍ତେଣ—ପୃ ୩୧
ପାଏଣ ଅସ୍ତାଙ୍କମେ ପଡଲେ ଦେବତେ—ମଧ୍ୟ ପର୍ବ
(୪) ତୋହର ନମନ୍ତେ ଅଶୋ ବହଲ ସବୁନ୍ତ—ଅ, ପ, ପୃ ୭
ଭ୍ରମର ଥାନ୍ତେ କୃଷ୍ଣଲବ୍ଧ ଏତେତଣ—ସ, ପ,
ପାଣ୍ଡୁରଜା ଶୁଣିଲେ ତାହାଙ୍କର ବହନ୍ତେ—ଅ, ପ, ପୃ ୫୩
(୫) ତୁହି ଅମ୍ଭର ପ୍ରିୟ ଅଟୁନ୍ତି ହୋ ରଜା—ସ, ପ, ପୃ ୨୪୭
ଶୁଣସି ମହାରଜ ହୋଇ ପରମ ଶାନ୍ତ—ଅ, ପ, ପୃ ୭
ସହସ୍ର ଅପୂତ୍ରାନ୍ କୋଟି କଲ୍ୟାଣ ହୋସି—ଅ, ପ,
ମୋହର ରକ୍ଷଣ ପାଇଁ ପଶାଏ ଦଅସି—ସ୍ତ୍ରୀ, ପ, ପୃ ୮୧
(୬) ଜଳପ୍ର କୂଳର ଠନ୍ତୁଁ ଗୋଷ୍ଠାନ୍ତ ଜଟାଧ—ଅ, ପ, ୧
ପୃଥନ୍ତ ଛଡ ଠନ୍ତୁଁ ଚଣ୍ଡଲେ ଦେବୀ କୁନ୍ତୀ !—ଅ ପ
ମେସନ୍ତ ଦ୍ରୋଣଣ କଷ ବଶିଷ୍ଠେ ବସିଲେ—ମ, ପ,
ଏହାନ୍ତ ଶେଜ ଯେବେ ମୁଁ ଯିବ ପଳାଇ—ମ, ପ,
ତୋହର କ୍ଷତିପଣ ନ ଯୋଗାଇ ଅମ୍ଭନ୍ତ—ସ୍ତ୍ରୀ, ପ,
ସଦାଶିବ ବଳରମ ତୋଷଣ ଦୁହନ୍ତ—ସ, ପ, ପୃ ୫୫୦

ଏପ୍ରକାର ପ୍ରୟୋଗ ତତ୍ପୂର୍ବବର୍ତ୍ତୀ କୌଣସି ପ୍ରାଚୀନ ସାହିତ୍ୟଗ୍ରନ୍ଥରେ ପ୍ରାପ୍ତ ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ । (୭) ଏସମସ୍ତଙ୍କ ଛଡ଼ା ଆଉ କେତେଗୁଡ଼ିଏ ପ୍ରୟୋଗ ଦେଖା ଯାଏ । ଯାହା ଆମ୍ଭମାନଙ୍କୁ ଅତି ପ୍ରାଚୀନ ପ୍ରୟୋଗ ପରି ବୋଧହୁଏ । ଅତଏବ ଆମ୍ଭେମାନେ କେବଳ ଏହି ଭାଷାରୁ ଅଗେ ସିଦ୍ଧାନ୍ତ କରି ପାରୁଁ ଯେ ଶାରଳା ଦାସ ଭକ୍ତ କବି ଜଗନ୍ନାଥଙ୍କର ପୂର୍ବବର୍ତ୍ତୀ । ଦ୍ୱିତୀୟ କଥା ତଦୀୟ ଗ୍ରନ୍ଥର ଅନେକ ସ୍ଥାନରେ ଓଡ଼୍ରରାଷ୍ଟ୍ର ବା ଓଡ଼ିଶା ଓ ତଦନ୍ତର୍ଗତ କେତେକ ପ୍ରଧାନ ସ୍ଥାନର ନାମୋଲ୍ଲେଖ କରିଅଛନ୍ତି ଏବଂ ତତ୍ସହ ଚୋଡ଼ଙ୍ଗ ବା ଅନଙ୍ଗ (୮) କେବଳ ଏହି ଦୁଇ ପ୍ରାଚୀନ ନରପତିଙ୍କ

---

(୭) ନବୃତ ବୋଇଲେ ଘୋଡ଼ା ବାହୁଅଛ ହେବ—ବ, ପ,
ପର ତରନ୍ତ ପାଚାଙ୍ଗେ ଝଲକେ ବମାନ—ସ, ପ, ପୃ, [illegible]
ସ୍ନେହରେ ଧନୁ ଶୁକ୍ଳ ଅମାବସ ସ୍ତଡ—ସ, ପ, ପୃ ୧୧[illegible]
ପୁଣିହିଁ ଛମ୍ଭୁ ଦୁଃଶାକୁ ଅଣିସ ଗଢଥି—ସ, ପ, ପୃ ୩୮୧
ପନରି ଲାଉମାନ ସେ ନଷ୍ଟଡ଼ନ୍ତି (ଘାଲନ୍ତି) ଥଣି—ସ, ପ,
ପାଉଲ୍ ନ ପାଉସକୁ ସଞ୍ଚପ (ସଞ୍ଚ୍ୟା) କେ କହୁ—ସ, ପ,
ଖାଲଭୂଇ ଖବଦରେ କରନ୍ତି କ୍ଷୁଦ୍ର—ସ, ପ, ପୃ ୧୪୨
ଦୁରୂପ ବନାଅଗେ ଦେଖାଲରେ (ପ୍ରଣିଧି) କହିଲେ—ଅ, ପ,
ସେ ପାଦକମାନ ଅଗେ ସଗର ମୂହୁର୍ତ୍ତ—ଅ, ପ, ପୃ ୩୩
କୋପ ସହାଯଣ ନୁଅଇଲେ (ନ ପାଇଲେ) କହ୍ନିଁ—ଲ, ପ
ପ ହାର ଦେଣ ସକାଣୁପସ ଦଣ୍ଡବର—ଅ, ପ, ପୃ ୨୨୧
ପେଟେକ ବସ୍ତ୍ରାକ ମୋର ତରଣର ଘର
ତହିଁ ଏନ ପୀଠ ଦାନ ଦେଲୁ ମହାଅଚ (ମହାପାଉ)—ଲ, ପ
ଭୂମ୍ଭ ସଙ୍ଗେ ଧାତ୍ରଦେବ କେବଣ ନୃପତି—ସ, ପ, ପୃ ୧[illegible]
ବଡନ୍ତୀ ପୁରୁଷ ତହିଁ କହିଲେ ଧାରାକୁ—ସ୍ତ, ପ, ପୃ ୧୧
ଣସ୍ତବେ ଅନ୍ତୁ ତୋହର ବକ୍ରେ ପେ ଛହସ—(କବଚ)—ବ, ପ,

(୮) ସେ ଦେଶେ ଅଛି ଚୋଡ଼ଙ୍ଗ ଚକ୍ରବର୍ତ୍ତୀ ସ୍ୱପ୍ନେ ।
ତାର ଦୁବନେ ନବୃତ କସବ ବନସ୍ୱେ—ସ, ପ, ପୃ ୨୨୪
କଅଙ୍ଗ ବଙ୍ଗ ପେ ଓଡ଼ଙ୍ଗ କଟଦେଶ ।
ଗଙ୍ଗାମ ତ୍ରିହୁତ ଅଚ ଦେଶ ଯେ କରେଣସ
ଅନଙ୍ଗ ଓଡ଼ିସନ୍ତୁ ପେ କେନଣ ସେକସନ୍ତୁ—ଅ, ପ,

ନାମ ସୂଚନା କରିଅଛନ୍ତି । ଏଥିରୁ ସ୍ପଷ୍ଟ ଜଣା ଯାଉଅଛି ଯେ, କବି ଅନଙ୍ଗଭୀମ ଦେବଙ୍କ ରାଜତ୍ୱକାଳର ବହୁବର୍ଷ ଉତ୍ତାରେ ଜନ୍ମ ଗ୍ରହଣ କରିଥିଲେ । ଇତିହାସ ଅଜ୍ଞାତ ଥିବାରୁ ବୋଧ ହୁଏ କବି ଉକ୍ତ ଦୁଇ ରାଜାଙ୍କୁ ବହୁ ପ୍ରାଚୀନ ବୋଲି ଅନୁମାନ କରି ମହ ଭାରତୀୟଯୁଗରେ ସେମାନଙ୍କ ନାମ ସନ୍ନିବେଶିତ କରିଅଛନ୍ତି । ଉପରୋକ୍ତ ପ୍ରମାଣମାନଙ୍କ ସାହାଯ୍ୟରେ ବର୍ତ୍ତମାନେ ଆମ୍ଭେମାନେ ଏହା କହିବାକୁ ସମର୍ଥ ହୋଇଅଛୁଁ ଯେ, ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ ଅନ୍ତେ ଏବଂ ରାଜା ପ୍ରତାପରୁଦ୍ରଙ୍କର ରାଜତ୍ୱ ପୂର୍ବେ ଅଥବା ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରୁ ଷୋଡ଼ଶ ଶତାବ୍ଦୀର ଅର୍ଦ୍ଧ ପର୍ଯ୍ୟନ୍ତ ଏହି ଦୁଇଶତବର୍ଷ ମଧ୍ୟରେ ଅବଶ୍ୟ ଅମ୍ଭମାନଙ୍କର ଏହି କବି ଆବିର୍ଭୂତ ହୋଇଥିବେ । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱପୂର୍ବେ କହିବାର ଅନ୍ୟ ଗୋଟିଏ କାରଣ ଏହି ଯେ, ତାହାଙ୍କର ରାଜତ୍ୱ ମଧ୍ୟରେ ମହାବୈଷ୍ଣବ ଚୈତନ୍ୟ ଦେବଙ୍କ ଦ୍ୱାରା ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରବର୍ତ୍ତିତ ହେଲା ଏବଂ ତତ୍ସଙ୍ଗେ ବଙ୍ଗୀୟମାନଙ୍କର ଏ ଦେଶରେ ଅବସ୍ଥାନ ଦ୍ୱାରା ବଙ୍ଗ ଭାଷାର ପ୍ରଭାବ ଏ ଭାଷାକୁ ସ୍ପର୍ଶ କରିଥିଲା, ସେଥି ଯୋଗୁଁ ଜଗନ୍ନାଥ ପ୍ରଭୃତି ତତ୍କାଳୀନ କବିଙ୍କ ଲେଖାରେ କେତୋଟି ବଙ୍ଗାତ୍ମକ ଶବ୍ଦ ଏଥିରେ ପ୍ରବେଶ କରିଥିବାର ଲକ୍ଷିତ ହୁଏ । କିନ୍ତୁ ଏହି ବରାଟ ଛନ୍ଦରେ ସେ ପ୍ରକାର ଶବ୍ଦର ସତ୍ତା ନାହିଁ । * ଉଦ୍ଧୃତ ପଦ୍ୟାଂଶମାନ

* ବଙ୍ଗଳା ଶବ୍ଦ ଜାଣିବା ଦୂରେ ଥାଉ ବଙ୍ଗଳା ଅକ୍ଷର ଓ ଭାଷା ତାହାଙ୍କର କର୍ଣ୍ଣଗୋଚର ହୋଇଥିଲା କି ନାହିଁ ସେଥିରେ ସନ୍ଦେହ ଜନ୍ମେ । ମଧ୍ୟପଙ୍କ ଲକ୍ଷିତ ଏହି କତିପୟପଂକ୍ତି ପଢ଼ିଲେ ଅମ୍ଭମାନଙ୍କୁ ଏହିପରି ସଂଶୟ ପଶିବାକୁ ହୁଏ । ଶ୍ରୀକୃଷ୍ଣଙ୍କ ଲିପି ଶିକ୍ଷା 'ସ୍ଥଳରେ କବି "ଓଡ଼ିଆ ତେଲଙ୍ଗୀ ଗୌଡ଼ ନାଗରୀ ଦକ୍ଷିଣୀ, କନକ ଦ୍ରାବିଡ଼ ଯେ ଗୌଡ଼ ଭାଷା ଯେତେ । ଏହିପରି ଶିଖିଲେ ଭାଷା କେତେଟି, ନବଦିନେ ଲେଖିଲେ ତାଳପତ୍ର ଗୋଟି ।, ଲେଖିଲେ କଳୁ ଉନ୍ନିଧରେ ପ୍ରତିବାସୀ ବଙ୍ଗର ନାମୋଲ୍ଲେଖ ସୁଦ୍ଧା ନାହିଁ । ଏଠାରେ ବୋଧହୁଏ କବି 'ଲିପି' ଅର୍ଥରେ ଭାଷା ଶବ୍ଦ ବ୍ୟବହାର କରି ଅଛନ୍ତି । ଅତି-ପ୍ରାଚୀନକାଳରେ ୬୪ ପ୍ରକାର ଲିପି ପ୍ରଚଳିତ ଥିବାର ପ୍ରମାଣ ମିଳେ । 'ଲଳିତ ବିସ୍ତର,

ଅଂଶତଃ ତାହାର ପ୍ରମାଣ । ସୁତରାଂ ଏହା ପ୍ରାଚୀନ ସାହିତ୍ୟର ଅଧମ ଅବସ୍ଥାର ସୂଚନା କରୁଅଛି । ଏହିପରି ନାନା ପ୍ରମାଣ ଦ୍ୱାରା ଆମ୍ଭେମାନେ ସେହି ଆବିର୍ଭାବକାଳ ପ୍ରତି ଅଗ୍ରସର ହୋଇ ପାରୁଅଛୁଁ । ଆଉ ଜଗନ୍ନାଥଙ୍କର ପରବର୍ତ୍ତୀ ଅଧିକାଂଶ ସାହିତ୍ୟ ଯେପରି ବୈଷ୍ଣବୀୟ କଥା ବା ରାଧାକୃଷ୍ଣପ୍ରେମାମୃତରସରେ ପରିପୂର୍ଣ୍ଣ ଏବଂ ସେଥିରେ ପ୍ରେମମୟ ରାଧାକୃଷ୍ଣଙ୍କର ଯେପରି ରସାଶ୍ରିତ ବର୍ଣ୍ଣନା ଅଛି, ଏଗ୍ରନ୍ଥରେ ଉକ୍ତ ଯୁଗଳମୂର୍ତ୍ତିର ସେପରି ବର୍ଣ୍ଣନା ନାହିଁ । ଦ୍ୱିତୀୟ କଥା କବିଙ୍କର ଚତୁର୍ଦ୍ଦଶାକ୍ଷର ଛନ୍ଦକୁ ଓଡ଼ିଆ ଛନ୍ଦର ପ୍ରଥମ ଅବତାର କହିଲେ ଚଳେ । ଏହା ପରବର୍ତ୍ତିସାହିତ୍ୟର ଛନ୍ଦ ପରି କୌଣସି ନିୟମବଦ୍ଧ ନୁହେ । ଅନେକ ସ୍ଥଳରେ ଯେପରି ଅକ୍ଷର ସଂଖ୍ୟାର ବ୍ୟତିକ୍ରମ ହୋଇଅଛି । ତେଣୁ ପାଠ କଲାବେଳେ ତାହା ଯଥାର୍ଥ ଛନ୍ଦ ବା ପଦ୍ୟ ପରି ଶୁଣା ନ ଯାଇ ଗଦ୍ୟ ପ୍ରାୟ ଶୁଣା ଯାଏ ।

ଯାହା ପ୍ରମାଣ କରିବାପାଇଁ ଆମ୍ଭେମାନେ ଏତେ ଆନ୍ଦୋଳନ କରୁଥିଲୁଁ, ସେ ସମ୍ବନ୍ଧରେ କବିମଧ ଆମ୍ଭମାନଙ୍କୁ ବହୁତ୍ ଆଭାସ ଦେଇ-ଅଛନ୍ତି । ମହାଭାରତ ପ୍ରାରମ୍ଭରେ ସେ ତାହାଙ୍କର ଯେଉଁ କ୍ଷୀଣ ପରି-ଚୟ ଦେଇ ଅଛନ୍ତି ସେଥିରୁ ବୁଝା ଯାଉଅଛି ଯେ ଗଙ୍ଗାବଂଶୀୟ ରାଜା କପିଳେନ୍ଦ୍ରଦେବଙ୍କ ରାଜତ୍ୱକାଳରେ (୧) ସେ ବିଦ୍ୟମାନ ଥିଲେ ।

---

ନାମକ ପ୍ରସିଦ୍ଧ ବୌଦ୍ଧଗ୍ରନ୍ଥରେ ଅନେକ ପ୍ରାଚୀନ ଲିପିର ନାମ ଏବଂ ବୁଦ୍ଧଦେବ ଏକାକୀ ୬୪ ପ୍ରକାର ଲିପି ଅଭ୍ୟସ୍ତ କରିଥିବାର କଥା ଲିଖିତ ହୋଇଅଛି । କିନ୍ତୁ ସେଥିରେ ବଙ୍ଗ-ଲିପିର ନାମ ଅଦ୍ୟସ୍ଥଳରେ କଥିତ ହୋଇଅଛି ବଙ୍ଗଭାଷା ଅପେକ୍ଷାକୃତ ପରବର୍ତ୍ତିନୀ ହେଲେହେଁ ବଙ୍ଗାକ୍ଷର ଯେ ବହୁକାଳ ପୂର୍ବରେ ଥିଲା, ତାହା ଆମ୍ଭେମାନେ ଉକ୍ତ ବୌଦ୍ଧ-ଗ୍ରନ୍ଥରୁ ଏବଂ ଐତିହାସିକମାନଙ୍କ ଉକ୍ତିରୁ ଜାଣିଅଛୁଁ, ମାତ୍ର ଏହାଦ୍ୱାରା ସେ ଲିପିର କାମୋ-ତ୍କର୍ଷ କରି ନାହାନ୍ତି । ଏପରି ଉଗଛତା ଏଦେଶରେ ତୈଳଙ୍ଗ ଅବସ୍ଥିତକାଳରେ ଅଥବା ତତ୍ପରେ ସମ୍ଭବ କି ?

(୧) ପରମେଶ୍ୱର ଲକ୍ଷଣହିଁ ମହୋଦଧି ତଟେ
ନୀଳପୁରରେ ପତିତ ଶ୍ରୀକଳପବଟେ ।

ମାତ୍ର " ପ୍ରଣମିବେ ଖଟଇ କପିଳେଶ୍ୱର ରାଜା " ଏତିକରୁ ଅମ୍ଭେ-ମାନେ କବିଙ୍କର ସନ ତାରିଖ ଦେବାକୁ ଏକାନ୍ତ ଅକ୍ଷମ । ତଥାପି ଅମ୍ଭମାନଙ୍କର ଅନୁମାନ ସ୍ୱତଃ ସେକାଳପ୍ରତି ପ୍ରଧାବିତ ହୋଇ, କେଉଁଠାରେ ସ୍ଥିରତା ଅବଲମ୍ବନ କରିବ ଦେଖାଯାଉ । ଯେଉଁ ଇତିହାସର ସତ୍ୟଉପରେ ଅମ୍ଭେମାନେ ବିଶ୍ୱାସ ସ୍ଥାପନକରି ଅଛୁ-ଅଛୁଁ, ସେଥିରୁ ଏହା ମିଳୁଅଛି ଯେ, କପିଳେନ୍ଦ୍ର ବା କପିଳେଶ୍ୱର ଦେବ ଖ୍ରୀଷ୍ଟୀୟ ୧୪୫୨ ଅବ୍ଦରୁ ୧୪୭୯ ଅବ୍ଦ ପର୍ଯ୍ୟନ୍ତ ୨୭ ବର୍ଷ କାଳ ରାଜତ୍ୱ କରିଥିଲେ । ଏହି ରାଜତ୍ୱଯୁଗର କେଉଁଅଂଶରେ କବି ମହାଭାରତ ଆରମ୍ଭ କରିଥିଲେ, ତାହା ଜାଣିବା କଠିନ, ତଥାପି ଉଲ୍ଲିଖିତ ଉକ୍ତିର ଭଙ୍ଗୀରୁ ପ୍ରତୀତ ହେଉଅଛି ଯେ ଗ୍ରନ୍ଥ ଲେଖିବା ବେଳକୁ ରାଜତ୍ୱର ପ୍ରାୟ ଅର୍ଦ୍ଧାଂଶ ଅତୀତ ହୋଇଥିବ ।

ଏହି ଅନୁମାନ ଉପରେ ନିର୍ଭର କରି ଅମ୍ଭେମାନେ ଯଦି ମହା-ଭାରତ ରଚନା କାଳକୁ ୧୪୬୫ ଖ୍ରୀଷ୍ଟାବ୍ଦର ଆସନ୍ନକାଳ ଧରୁଁ, ତାହା ହେଲେ ଜନ୍ମକାଳ ଅବଧାରଣ କରିବା ପାଇଁ କେବଳ ତତ୍କା-ଳୀନ ବୟସ ନିରୂପଣ କରିପାରିଲେ ଯଥେଷ୍ଟ ହେବ । ଏହି ମହା-ଗ୍ରନ୍ଥ ମଧ୍ୟରେ କବି କୌଣସିଠାରେ ଯଦ୍ୟପି ସ୍ୱୀୟ ବୟସ ଉଲ୍ଲେଖ କରି ନାହାନ୍ତି, ତଥାପି ସେଥିରୁ ତାହାଙ୍କ ଅବସ୍ଥାର ପରିଚୟ ମିଳେ । 'ଶାରଳା ଦାସକୁ ପ୍ରଭୁ ଗତିମୁକ୍ତି ଦେବା' ଇତ୍ୟାଦି ପ୍ରକାର ଉକ୍ତି ଗ୍ରନ୍ଥର ସ୍ଥାନେ ସ୍ଥାନେ କବିଙ୍କ ମୁଖରୁ ଯେପରି ଘନଘନ ନିଃସୃତ ହୋଇ ଅଛି, ସେଥିରୁ ଏବଂ ତହିଁରୁ ଯେଉଁ ବ୍ୟାକୁଳଭାବ ମୋକ୍ଷ-ଲିପ୍ସା ଆତ୍ମଗ୍ଲାନି ପ୍ରଭୃତିର ପରିଚୟ ମିଳୁଅଛି, ତଦ୍ଦ୍ୱାରା ଅନୁମାନ

ବନ୍ଦେ ରାମକୃଷ୍ଣ ସୁଭଦ୍ରା ମହାବ୍ରହ୍ମ
ଶ୍ରୀବତ୍ସ ଚରଣପ୍ରସାଦ ମହାଧାମ ।
କଳିକାଳ ଧ୍ୱଂସନକୁ ବେଗଗୋଟି ପୂଜା
ପ୍ରଣମିବେ ଖଟଇ କପିଳେଶ୍ୱର ରଜା । ଆ; ପ; ପୃ ୨

ହୁଏ, ସେତେବେଳେ ତାହାଙ୍କୁ ଜରା ବା ବାର୍ଦ୍ଧକ୍ୟ ଆକ୍ରମଣ କରି-ଥାଏ । ଅବଶ୍ୟ ପାଞ୍ଚଶତ ବର୍ଷ ପୂର୍ବର ଜନସାଧାରଣଙ୍କର ଆୟୁ ବା ଜୀବନକାଳକୁ ସମ୍ଭବ କରି ଦେଖିଲେ ଏହା ବୋଲାଯାଇ ପାରେ ସେତେବେଳେ ତାହାଙ୍କର ବୟସ ସତ୍ତର ବର୍ଷରୁ ଊର୍ଦ୍ଧ୍ୱ ହୋଇଥିବ । ତତ୍କାଳୀନ ବୟସ ତେଷଠି ବର୍ଷ ଧରିଲେ କବିଙ୍କର ଜନ୍ମବର୍ଷର ୧୪୧୫ ଖ୍ରିଷ୍ଟାବ୍ଦର ନିକଟବର୍ତ୍ତୀ ହେଉଅଛି । ଅତଏବ ଅନ୍ୟ ପ୍ରମାଣ ପାଇବାଯାଏ ବର୍ତ୍ତମାନେ ଆମ୍ଭେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ପାରୁଁ ଯେ କବି ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ଆବିର୍ଭୂତ ହୋଇଥିଲେ । ଏହି ସିଦ୍ଧାନ୍ତ ଅନୁସାରେ କବି ଭକ୍ତ ଜଗନ୍ନାଥଙ୍କର ଏକ ଶତାବ୍ଦୀ ପୂର୍ବବର୍ତ୍ତୀ ଅଥବା ବର୍ତ୍ତମାନ ବର୍ଷ ଠାରୁ ପ୍ରାୟ ପାଞ୍ଚଶତ ବର୍ଷ ପୂର୍ବବର୍ତ୍ତୀ ଅଟନ୍ତି । ପାଞ୍ଚଶବର୍ଷ କହିଲେ କିଛି ଅଧିକ ହେଉ ନାହିଁ । ଅଦ୍ୟାପି ପ୍ରଚଳିତ ସ୍ଥାନୀୟ ଜନଶ୍ରୁତି ଏହି ସିଦ୍ଧାନ୍ତର ପୋଷକତା କରୁଅଛି । କବିଙ୍କର ବର୍ତ୍ତମାନ ବଂଶଧରମାନେ କହନ୍ତି ଯେ, ବଂଶପରମ୍ପରାଗତ ଶ୍ରୁତି ଅନୁସାରେ ଶାରଳା ଦାସ ସେମାନ-ଙ୍କର ପଞ୍ଚଦଶ ବା ଷୋଡ଼ଶ ପୁରୁଷ ହେବେ । ଷୋଳ ପୁରୁଷରେ ୫୦୦ ବର୍ଷ ଅତୀତ ହେବା କଦାପି ଅସମ୍ଭବ ନୁହେ ।

ପୂର୍ବ ପ୍ରସଙ୍ଗରେ ଆମ୍ଭେମାନେ ଶାରଳା ଦାସଙ୍କୁ ୫୦୦ ବର୍ଷରୁ ଅଧିକ ପୂର୍ବର କବି ବୋଲି ସ୍ଥିର କଲୁଁ । କିନ୍ତୁ ତାହାଙ୍କ ପୂର୍ବେ କେହି କବି ବିଦ୍ୟମାନ ଥିଲେ କି ନାହିଁ, ତାହା ଏପର୍ଯ୍ୟନ୍ତ ଆଲୋଚନା କରି ନାହୁଁ । ହଣ୍ଟର ସାହେବ କେଶବ କୋଇଲି ୬୦୦ ବର୍ଷ ପୂର୍ବରେ ରଚିତ ହୋଇଥିବାର ପ୍ରକାଶ କରିଅଛନ୍ତି । କେଉଁ ପ୍ରମାଣ ବା ଯୁକ୍ତିର ବଳରେ ସେ କୋଇଲିକୁ ଏତେ ପ୍ରାଚୀନ ବୋଲି ନିରୂପଣ କଲେ, ତାହା ଆମ୍ଭେମାନେ ଦେଖି ପାରୁଁ ନାହୁଁ । ଆମ୍ଭେମାନେ ଦେଖୁଅଛୁଁ କୋଇଲିର ଭାଷା ଆଉ ଆଧୁନିକ ଭାଷା ଏକାପରି ; ସେଥିରେ

ଉତ୍କଳର ଆଦି କବି ।

ପ୍ରାଚୀନତାର କଣ୍ଠମାତ୍ର ଲକ୍ଷଣ ନାହିଁ । ତେବେ ଅନେକେ ଏହା କହି ପାରନ୍ତି ଯେ ଅଦ୍ଧସ୍ଫୁଟକାର ଲେଖାରୁ ପ୍ରାଚୀନତାର ଲକ୍ଷଣ ବା କଣ ଜଣାଯିବ ? ପକ୍ଷାନ୍ତରେ, ଯାହା ଥିଲା ତାହା ଦୀର୍ଘକାଳ ସାଧାରଣଙ୍କ ମୁଖରେ ଆବୃତ୍ତି ଦ୍ୱାରା ପରିବର୍ତ୍ତିତ ଏବଂ ମାର୍ଜିତ ହୋଇ ବର୍ତ୍ତମାନ ଆକାର ଧାରଣ କରିଅଛି । ତଥାପି ଆମ୍ଭେମାନେ କୋଇଲିକି ଶାରଳା-ମହାଭାରତଠାରୁ ପ୍ରାଚୀନ ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନାହୁଁ । କୋଇଲିର ଚତୁର୍ଦ୍ଦଶାକ୍ଷର ବୃତ୍ତ ବର୍ତ୍ତମାନ ଯୁଗର ପଦ୍ୟପରି ଯତିପାତ ନିୟମରେ ରଚିତ । ତାହା ଜଣେ ଅଳ୍ପଜ୍ଞ କ୍ଷୁଦ୍ର କବିଙ୍କ ଦ୍ୱାରା ରଚିତ ସତ୍ୟ ; ମାତ୍ର ରଚନାର ଲଳିତସ୍ୱର ବୃତ୍ତ ବା ଦକ୍ଷତାରୁ ସ୍ପଷ୍ଟ ଜଣା ଯାଉଅଛି, କବି ତତ୍ପୂର୍ବରୁ ଅନେକ ବୃତ୍ତର ପଦ୍ୟାଦି ଅଥବା ଉକ୍ତ ବୃତ୍ତର କେତେକ ପଦ୍ୟ ପାଠ କରିଥିଲେ । ସେ ସବୁ ତୁଳନା କରି ଦେଖି ନ ଥିଲେ ସର୍ବ ପ୍ରଥମ ରଚନାରେ ଏପ୍ରକାର ପାରିପାଟ୍ୟ ସମ୍ଭବ ହୁଅନ୍ତା ନାହିଁ । ଏହି ସବୁ କାରଣରୁ ଆମ୍ଭେମାନେ କୋଇଲିକୁ ମହାଭାରତର ପଶ୍ଚାତ୍ ରଚିତ ବୋଲି ବିଶ୍ୱାସ କରୁଅଛୁଁ ; କିନ୍ତୁ ତଥାପି ଏହା ସ୍ୱୀକାର୍ଯ୍ୟ ଯେ, ଚୌତିଶା ଲେଖା ଆମ୍ଭମାନଙ୍କ ପ୍ରାଚୀନ ସାହିତ୍ୟର ସର୍ବ ନିମ୍ନସୋପାନ । ନିଜେ ମହାଭାରତର ଏହି କବି ମଧ୍ୟ ବାଲ୍ୟକାଳରେ କୌଣସି ଚୌତିଶା ଅଭ୍ୟାସ କରିଥିବାର ପ୍ରମାଣ କିଂବଦନ୍ତୀରୁ ମିଳୁଅଛି । ଆଗେ ବର୍ଣ୍ଣମାଳାକ୍ରମେ ଚୌତିଶା ରଚନା ଏବଂ ତାହାର ବହୁକାଳ ଉତ୍ତାରେ ଚୌତିଶା ଲକ୍ଷଣାକ୍ରାନ୍ତ କୋଇଲି ରଚିତ ହୋଇଥିବା ସମ୍ଭବ ଓ ସଙ୍ଗତ । ଅବଶ୍ୟ କେଉଁ ଚୌତିଶା ବା କୋଇଲି ସର୍ବାଗ୍ରେ ରଚିତ ହୋଇଥିଲା, ତାହା ଏ ସ୍ଥଳରେ ନିର୍ଦ୍ଧାରଣ କରିବାକୁ ଆମ୍ଭେମାନେ ଅକ୍ଷମ । ଆହୁରି ମଧ୍ୟ ସର୍ବ ପ୍ରଥମ ରଚିତ ଚୌତିଶା ଏପର୍ଯ୍ୟନ୍ତ ଅଛି କି ନାହିଁ ସନ୍ଦେହର ବିଷୟ । ସେ ଯାହା ହେଉ ଉକ୍ତବିଧ ଚୌତିଶା ବା କ୍ଷୁଦ୍ର ଗୀତ ଏହି କବିଙ୍କ ମହାଭାରତ ରଚନାର ବୀଜ । ତାହାଛଡ଼ା ସେ କବିତା

ରଚନାରେ ସେ ଅନ୍ୟକୌଣସି କବିଙ୍କଠାରୁ ସାହାଯ୍ୟ ପାଇ ନାହାନ୍ତି ବୋଲି ମନେ ହୁଏ । ସୁତରାଂ ଏହି ମହାଭାରତ ଉତ୍କଳର ଆଦମ ସାହିତ୍ୟ । ତହିଁରେ ପ୍ରାକୃତ ଜନସୁଲଭ ବର୍ଣ୍ଣନା, ଅନ୍ଧବିଶ୍ୱାସ, ସତ୍ୟର ଅପଳାପ, ଅତିରଞ୍ଜନ, ଅବ୍ୟାକରଣ ପ୍ରୟୋଗ, ନିରଙ୍କୁଶତା, ଅଶ୍ଳୀଳତା ବା ଗ୍ରାମ୍ୟଭାବାଦିର ଯଥେଷ୍ଟ ପରିଚୟ ପାଇ ଆମ୍ଭେମାନେ ଦୃଢଭାବରେ କହିପାରୁଁ ଯେ, ଏହା ଆଦିମ ସାହିତ୍ୟଲକ୍ଷଣାକ୍ରାନ୍ତ । ଏହି ଆଦିମ ଯୁଗର ଲକ୍ଷଣ ତତ୍ପୂର୍ବବର୍ତ୍ତୀ ପ୍ରାଚୀନ ସାହିତ୍ୟରେ ଏତେ ନାହିଁ । ମହାଭାରତ ପୂର୍ବରେ ଯେଉଁ ସବୁ କ୍ଷୁଦ୍ରଗୀତାଦି ଥିବାର ଆମ୍ଭେମାନେ ଅନୁମାନ କରୁଁ, ତାହା ଅବଶ୍ୟ ସାହିତ୍ୟ ପଦବାଚ୍ୟ ନୁହେ । ଅତଏବ ଶାରଳା ଦାସ ଓଡ଼ିଆଭାଷାର ଆଦିକବି* ବା ଉତ୍କଳର ବାଲ୍ମୀକି ଆଖ୍ୟା ପାଇବାର ସମ୍ପୂର୍ଣ୍ଣ ଯୋଗ୍ୟ । ଉଭୟ ଆଦି-କବିଙ୍କର ଗୁଣଗ୍ରାମ ଓ କ୍ରିୟାକର୍ମରେ ସୌସାଦୃଶ୍ୟ ଅଛି । ବାଲ୍ମୀକିଙ୍କ ଜୀବନର ପ୍ରଥମଭାଗ ଯେପରି ଦସ୍ୟୁଜନୋଚିତ ନୀଚ ବୃତ୍ତିରେ ଯାପିତ ଏହାଙ୍କର ବାଲ୍ୟ ଯୌବନ ମଧ୍ୟ ସେହିପରି ଶୂଦ୍ରୋଚିତ ହୀନ ବୃତ୍ତିରେ ଅତିବାହିତ । ଦେବାଦେଶରେ ସେ ଆଦି ମହାକବି ଯେପରି ନବଜୀବନ ପ୍ରାପ୍ତ ହୋଇ କଠୋର ତପସ୍ୟା ଦ୍ୱାରା ଜ୍ଞାନରତ୍ନ-ଲାଭ ପୂର୍ବକ ପକ୍ୱାବସ୍ଥାରେ ନୂତନ ଛନ୍ଦରେ ମହାକାବ୍ୟ ଆରମ୍ଭ କରିଥିଲେ ; ଉତ୍କଳଭାଷାର ଏହି ଆଦିକବି ମଧ୍ୟ ସେହିପରି ଦେବୀ ଆଦେଶରେ ନିଜବୃତ୍ତି ତ୍ୟାଗକରି କଠିନ ସାଧନା ଓ ଉପାସନା ଦ୍ୱାରା ଅବଶିଷ୍ଟ ଜୀବନ ଯାପନ କରି ଜ୍ଞାନ ଲାଭ କରିଥିଲେ ଏବଂ ସେହି ବଳରେ ସେ ଅପକ୍ୱ ଉତ୍କଳଭାଷାରେ ନୂତନ ଛାଞ୍ଚରେ ମହା-ଭାରତ ମହାପ୍ରାସାଦ ନିର୍ମାଣ କରିଥିଲେ । ବଲ୍ମୀକୋଦ୍ଭବ ମହର୍ଷି ଯେପରି ବାଲ୍ମୀକି ନାମରେ ସମଗ୍ର ଭାରତବାସୀଙ୍କ ନିକଟରେ ପରି-ଚିତ, ଶାରଳାଦେବୀଙ୍କର ଚିରଦାସ ଏହି ଶୂଦ୍ରମୁନି ମଧ୍ୟ ସେହିପରି

* ଜନମିଲେ ତୋ କୋଳରେ, ଶାରଳାଦି କବିବରେ—ମଧୁସୂଦନ ।

ଶାରଳା ଦାସ ନାମରେ ସମସ୍ତ ଉତ୍କଳଖଣ୍ଡରେ ପରିଚିତ । ତାହାଙ୍କୁ ଉତ୍କଳର ବାଲ୍ମୀକି ବୋଲି କହିବା ଦ୍ୱାରା ଏହା କେହି ବୁଝିବେ ନାହିଁ ଯେ, ତାହାଙ୍କ ପୂର୍ବରେ ଉତ୍କଳରେ ଅନ୍ୟ କବି ଅଖ୍ୟାଧାରୀ କେହି ନ ଥିଲେ । ତାହାଙ୍କର ବହୁକାଳ ପୂର୍ବରେ ଅନେକ ଉତ୍କଳୀୟ କବି ସଂସ୍କୃତଭାଷାରେ କାବ୍ୟନାଟକାଦି ରଚନା କରିଥିଲେ ଏବଂ କେହି କେହି ମଧ୍ୟ ପାଲି ଓ ପ୍ରାକୃତରେ ଗ୍ରନ୍ଥ ଲେଖିଥିଲେ ବୋଲି ଅମ୍ଭମାନଙ୍କର ବିଶ୍ୱାସ । କିନ୍ତୁ ଦେଶଭାଷାର କବିଶ୍ରେଣୀଙ୍କ ମଧ୍ୟରେ ତାଙ୍କ ବ୍ୟତୀତ ଅନ୍ୟ କେହି ପ୍ରାଚୀନ ନୁହନ୍ତି । ଦେଶଭାଷା-ସ୍ଥଳରେ ଅବଶ୍ୟ ଦେଶର ନାମ ପ୍ରଯୁଜ୍ୟ । ସୁତରାଂ ଏହି ମହାଗ୍ରନ୍ଥର ରଚୟିତାଙ୍କୁ ଉତ୍କଳ-ବାଲ୍ମୀକି ଅଖ୍ୟା ପ୍ରଦାନ କଲେ ଉତ୍କଳଭାଷା ଓ ଦେଶର ଗୌରବ ଅପଚିତ ହେବ ନାହିଁ ॥

ବାଲ୍ୟଶିକ୍ଷା ଏବେ ତଦନ୍ତର ମୂର୍ତ୍ତି ।

ବର୍ତ୍ତମାନ ପ୍ରାପ୍ତ ପୂର୍ବେ ଏ ଦେଶର ବିଦ୍ୟାଳୟ ନ ଥିଲା କିଂବା ଏକତ୍ର ବହୁ ଛାତ୍ରଙ୍କୁ ଯଥାବିଧି ଶିକ୍ଷାଦାନର ବ୍ୟବସ୍ଥା ନ ଥିଲା । ଯାହା କିଛି ଥିଲା ତାହା କେବଳ ସଂସ୍କୃତ ଭାଷାରେ ହେଉଥିଲା । ଗଙ୍ଗବଂଶୀୟ ନରପତି-ମାନଙ୍କର ରାଜତ୍ୱ ଯୁଗର ପୂର୍ବେ ଏବଂ ପ୍ରାରମ୍ଭରେ ଏ ଦେଶରେ ପଟ୍ଟାଦି ସଂସ୍କୃତ ଭାଷାରେ କ୍ୱଚିତ୍ ପାଲି ଭାଷାରେ ଲିଖିତ ହେଉଥିଲା । ଦେଶବାସୀମାନେ ସଂସ୍କୃତ ଶିକ୍ଷାରେ ସବିଶେଷ ଅନୁରାଗୀ ଥିଲେ ଏବଂ ସାଧାରଣତଃ ସଂସ୍କୃତ ଅଭିଧାନ ଆଗେ ପଢି ବ୍ୟାକରଣ ଓ ତତ୍ପଶ୍ଚାତ୍ କୌଣସି୨ କାବ୍ୟଅଲୋଚନା କରୁଥିଲେ । ରାଜପୁରୋହିତମାନେ ଏବଂ ରାଜଧାନୀର ସଦ୍‌ବଂଶଜ ବ୍ରାହ୍ମଣମାନେ ରାଜାଙ୍କର ଆନୁକୂଲ୍ୟରୁ ସଂସ୍କୃତକାବ୍ୟନାଟକାଦି ବର୍ଣ୍ଣନାରେ ସମଧିକ ପାଣ୍ଡିତ୍ୟ ଉପାର୍ଜନ କରୁଥିଲେ । ଉତ୍କଳ ଦେଶୀୟ କାବ୍ୟ ନାଟକାଦିରୁ ସେମାନଙ୍କର ଅସାଧାରଣ ପାଣ୍ଡିତ୍ୟର

ପରିଚୟ ମିଳୁଅଛି । ରାଜସଭାରେ ପାଣ୍ଡିତ୍ୟ ପ୍ରଦର୍ଶନ ନିମିତ୍ତ ଜନ-
ଆଦରୁ ମଧ୍ୟ ଅନେକ ସଂସ୍କୃତ ଲେଖାପଢ଼ାରେ ଧୂରନ୍ଧର ହେବାକୁ
ଅନବରତ ଚେଷ୍ଟା ଏବଂ ପରିଶ୍ରମ କରୁଥିଲେ । ଏହିପରି ସମୟରେ
ଜନସାଧାରଣଙ୍କ ମୁଖରେ ମାଗଧୀ ପ୍ରାକୃତ ଏବଂ ତତ୍କାଳୀନ ଦେଶ
ପ୍ରଚଳିତ ଶବ୍ଦମାନ ମିଶି ଓଡ଼ିଆ ଭାଷାର ସୃଷ୍ଟି ହେଲା ଏବଂ କ୍ରମେ
ତାହା ଅଶିକ୍ଷିତ ସାଧାରଣଙ୍କ ଦ୍ୱାରା ପୁଷ୍ଟିଲାଭ କରି ଅନିୟମିତ ଓ
ଅସଂଯତ ଭାବରେ ଚଳିବାକୁ ଲାଗିଲା । ବିଜ୍ଞସାଧାରଣ କେବଳ
ଘରେ ଏବଂ ବାହାରେ ପ୍ରାକୃତଜନଙ୍କ ସହିତ ପ୍ରାକୃତ ଭାଷାରେ
ବ୍ୟବହାର କରିବାକୁ ବାଧ୍ୟ ହେଉଥିଲେ ; କିନ୍ତୁ ନିଜଭାବସ୍ପୃହାର
ପ୍ରକାଶ ସ୍ଥଳରେ ସେ ଭାଷାକୁ ଉପେକ୍ଷା କରି ସଂସ୍କୃତ ସାହିତ୍ୟର
ପୁଷ୍ଟିସାଧନ କରିବାକୁ ଲାଗିଲେ । ସୁତରାଂ ଉପଯୁକ୍ତ ପୋଷକ
ଅଭାବରୁ ଉତ୍କଳଭାଷା ପ୍ରଥମେ ବହୁକାଳ ଅପୌଷ୍ଟିକ ଅବସ୍ଥାରେ
ରହିଲା । ସମ୍ଭବତଃ ଏହିପରି ଅବସ୍ଥାରେ ପ୍ରାୟ ୨୦୦ ବର୍ଷ
ଉତ୍ତାରେ ଶାରଳାଦାସ କବି ଅବତୀର୍ଣ୍ଣ ହୋଇ ମହାଭାରତ ରଚ-
ନାର ସୂତ୍ରପାତ କଲେ । ସେତେବେଳେ ଓଡ଼ିଆ ଭାଷା ରଚନାରେ
ସାହାଯ୍ୟ ପାଇଁ କୌଣସି ପୁସ୍ତକ ନ ଥିଲା କିଂବା ମାତୃଭାଷା ଶିକ୍ଷା
ଲାଗି କୌଣସି ପାଠଶାଳା ସୃଷ୍ଟି ନ ଥିଲା । ଅନ୍ତତଃ ମଧ୍ୟ ଅଧମ-
ଯୁଗର ଲୋକେ ଅଳ୍ପକାଳ ପରେ ବିଦ୍ୟାଳୟରୁ ଶିକ୍ଷା କରୁ ନ ଥିଲେ ।
କେହି ଗୁରୁ ମୁଖରୁ ଶୁଣି କେହି ବା ମହାଶିକ୍ଷାଳୟ ପ୍ରକୃତିର ଅନୁ-
ଶୀଳନ କରି ଏବଂ କେହି୨ ସାଧନା ଧ୍ୟାନ ଧାରଣା ଦ୍ୱାରା ବହିର୍ଜଗ-
ତରୁ ଜ୍ଞାନ ଲାଭ କରି ଜ୍ଞାନୀ ହେଉଥିଲେ । ଅମ୍ଭମାନଙ୍କର ଆଦିକବି
ସମ୍ଭବତଃ ଏହି ପ୍ରକାରେ ଶିକ୍ଷିତ । ସେ ବାଲ୍ୟକାଳରେ କେବେ
ବର୍ଣ୍ଣଶିକ୍ଷା ଆରମ୍ଭ କରିଥିଲେ ଏବଂ କେତେଦୂର ଶିକ୍ଷାଲାଭ କରିଥିଲେ
ତାହା ଜାଣିବାର ଉପାୟ ନାହିଁ । ସେତେବେଳେ ଅନୁମାନ ଦ୍ୱାରା
ଅମ୍ଭେମାନେ କେତେକ କହିବାକୁ ଅଗ୍ରସର ହୋଇଅଛୁଁ—ସେ ଶିକ୍ଷା

ଦ୍ୱାରା ଓଡ଼ିଆ ଲେଖି ପଢ଼ି ପାରିବାର କ୍ଷମତା ପ୍ରାପ୍ତ ହୋଇଥିଲେ । ଖଣ୍ଡେ ଦୁଇଖଣ୍ଡ ଚୌତିଶା ବା କ୍ଷୁଦ୍ରଗୀତ ତଦୀୟ କବିତ୍ୱର ସମ୍ବଳ ଥିଲା । ବାଲ୍ୟକାଳରୁ ସେ କାର୍ଯ୍ୟ କରୁଥିଲା ବେଳେ ମନେ ମନେ ଇଚ୍ଛାମତ ଗୀତ ରଚନା କରୁଥିଲେ । ଏହି ପ୍ରକାରେ ସ୍ୱୀୟ ବ୍ୟବସାୟ ବୃତ୍ତିରେ ତାହାଙ୍କ ଜୀବନର ସାରଭାଗ ଅତୀତ ହୋଇଗଲା ଏବଂ ଏହି ଅତିକ୍ରାନ୍ତ ବୟସରେ ତଦୀୟ ଜୀବନର ମାର୍ଗ ଅତି ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଗଲା । ତହୁଁ ସେ ପୂର୍ବବ୍ୟବସାୟ ଏବଂ ନୀଚ ସଂସର୍ଗ ଛାଡ଼ି ସତ୍ସଂସର୍ଗରେ ମହାଭାରତ ରଚନା ଦ୍ୱାରା ଅନ୍ତ୍ୟ ଜୀବନର ମାର୍ଗ ଉଜ୍ଜ୍ୱଳତର କରିବାକୁ ପ୍ରବୃତ୍ତ ହେଲେ । ଏହି ପରି-ବର୍ତ୍ତନ ସମ୍ବନ୍ଧରେ ଏକାଧିକ ସ୍ଥାନୀୟ କିଂବଦନ୍ତୀ ପ୍ରଚଳିତ ଅଛି । ତନ୍ମଧ୍ୟରେ ଯେଉଁଟି ନବ ପ୍ରକାଶିତ ମହାଭାରତର ଉପକ୍ରମଣିକାରେ ସଂକଳିତ ହୋଇଅଛି ସେହିଟି ଆଗେ ଏଠାରେ ଉଦ୍ଧୃତ କରାଗଲା ।

"ଝଙ୍କଡ଼ ପ୍ରଗନାସ୍ଥ ମହାମାୟା ଶାରଳାଦେବୀଙ୍କ ପୀଠ ନିକଟରେ କୌଣସି ଏ- ଶୂଦ୍ରର ବସତି ଥିଲା । ଅନେକ ଗୁଡ଼ିଏ ସନ୍ତାନ ଥିଲେ ପିତା ପୁତ୍ରମାନଙ୍କ ସମ୍ମୁଖରେ ମହାଭାରତ ବିଷୟ ଗଳ୍ପ କରନ୍ତି । ସମୟାନ୍ତରେ ପୁତ୍ରମାନଙ୍କୁ ବର୍ଣ୍ଣିତ ବିଷୟ ମନେ ଅଛି କି ନାହିଁ ପଚାରନ୍ତେ ସମସ୍ତେ କିଛି କିଛି କହନ୍ତି ; କିନ୍ତୁ ସିଦ୍ଧେଶ୍ୱର ନାମଧେୟ କନିଷ୍ଠ ପୁତ୍ର କିଛି କହି ପାରନ୍ତି ନାହିଁ । ତେଣୁ ପିତା ତାହାଙ୍କୁ ନାନା କଟୂ ଭର୍ତ୍ସନା କରନ୍ତି । ଏହି ହେତୁ ସିଦ୍ଧେଶ୍ୱର କ୍ଷୁବ୍ଧ ହୋଇ ଜଗଦମ୍ବା ଶାରଳା ଦେବୀଙ୍କ ନିକଟରେ ଧରଣା ପଡ଼ିଲେ । କିଛି ଦିନ ପରେ ଦେବୀ ପ୍ରସନ୍ନା ହୋଇ ବର ଯାଚନ୍ତେ ସିଦ୍ଧେଶ୍ୱର ପ୍ରାର୍ଥନା କଲେ ଯେ 'ମୁଁ ମହାଭାରତ ରଚନା କରି ପାରିବି' ଏହି ବର ପ୍ରଦାନ କର । ତାଙ୍କ ଠାରେ ଦେବୀ ସନ୍ତୁଷ୍ଟ ହୋଇ ଆଜ୍ଞା ଦେଲେ ଯେ, ତୁ ଖେଦା ଲେଖନ ଘେନି କଳ୍ପବଟ* ମୂଳରେ ବସ, ଯାହା ଉପରୁ ଶୁଣିବୁ ଲେଖ । ସିଦ୍ଧେଶ୍ୱର ତଦନୁସାରେ କଳ୍ପବଟ ମୂଳରେ ବସିଲେ ଏବଂ ଯାହା ଶୁଣୁଥାଏ ତାହା ଲେଖୁଥାନ୍ତି । ଏହା ମହାଭାରତ ଗ୍ରନ୍ଥ । ସିଦ୍ଧେଶ୍ୱର ଆପଣାକୁ ଶାରଳା ଦେବୀଙ୍କର ଦାସ (ପରିକର) ନାମ ଧାରଣ କଲେ ; ତେଣୁ କବି ତାଙ୍କର ନାମ ଶାରଳା ଦାସ ବୋଲି ଲୋକରେ ପ୍ରଚଳିତ ହେଲା ।"

(ପ୍ରଥମ ଉପକ୍ରମଣିକା କୋମ୍ପାନୀ, ୧୮୯୮)

---

* ଏହି ବଟ ବର୍ତ୍ତମାନ ଶାରଳାଦେବୀଙ୍କ ମନ୍ଦିରର ପଶ୍ଚିମଦିଗରେ ଅନତି ଦୂରରେ ଅବସ୍ଥିତ ଏବଂ ଅଦ୍ୟାପି ଶାରଳାବଟ ବୋଲି ଖ୍ୟାତ ହେଉଅଛି ।

ଅନ୍ୟଟି ସ୍ଥାନୀୟ ଲୋକମାନଙ୍କ ମୁଖରେ ଏହିପରି ପ୍ରଚଳିତ ଅଛି ଯେ, "ଶାରଳା ଦାସ ପୂର୍ବପରି ଦିନେ ଗୋଟିଏ ବିଲଞ୍ଚରେ ହଳ କରୁଥିଲେ । ହଳକର୍ମରେ ଶ୍ରାନ୍ତ ବୋଧ ହେଲାବେଳେ ନିଜର ଏବଂ ଗୋରୁ ଦୁଇଟିର ଉତ୍ସାହ ନିମିତ୍ତ ପ୍ରିୟତମ ଚଉତିଶା ଗୀତ ଉଚ୍ଚ-ସ୍ୱରରେ ଗାଇବାକୁ ଲାଗିଲେ । ସେ ଦିନ ଅତ୍ୟଧିକ ଶ୍ରାନ୍ତିବଶତଃ ଗୀତ ବୋଲୁ ବୋଲୁ ମଧ୍ୟେ ପଦେ ମନେ ପଡ଼ିଲା ନାହିଁ, ତେତେବେଳେ ସେ ଅଗତ୍ୟା ଗୀତ ରସରୁ ବଞ୍ଚିତ ହୋଇ ଇଷ୍ଟଦେ-ବଙ୍କଠାରେ ଧ୍ୟାନ ରଖିଲେ । କଥିତ ଅଛି ଏହି ଗୀତ ବନ୍ଦ କରନ୍ତେ ହଠାତ୍ ଏକ ନାରୀମୂର୍ତ୍ତି ସେଠାରେ ଆବିର୍ଭୂତ ହୋଇ ତାହାଙ୍କୁ ସମ୍ବୋଧନ କରି କହିଲେ—'ଗୀତ ବନ୍ଦ କଲୁ କାହିଁକି ? ବୋଲ-ବୋଲ, ଆସି ଯିବ ଯେ, ତୋ ଗୀତ ମୋତେ ବଡ଼ ଭଲ ଲାଗେ । ମୋର ଇଚ୍ଛା ପଛକୁ ତୁହି ଯେପରି ମହାଭାରତ ରଚନା କରିବୁ ।' (୧) ଏହା କହି ସେ ମୂର୍ତ୍ତି ଅନ୍ତର୍ହିତ ହେଲେ । ଦାସେ ବିସ୍ମିତ ହୋଇ ପୁନର୍ବାର ଗୀତ ଆରମ୍ଭ କରି ସଫଳ କାମ ହେଲେ । ଏହି ଚଉତିଶାର ବର୍ତ୍ତମାନ ଅସ୍ତିତ୍ୱ ନାହିଁ । ତେବେ ତାହାର ନାମ 'ମନାଇ ଚଉତିଶା' ବୋଲି ସ୍ଥାନୀୟ ବଂଶଧରଙ୍କ ମଧ୍ୟରୁ କେହି କହନ୍ତି । କିନ୍ତୁ 'ମନାଇ' ଶବ୍ଦର ଅର୍ଥ କିଛି ବୁଝା ଯାଉ ନାହିଁ, ବୋଧ ହୁଏ 'କହ୍ନାଇ ଚଉତିଶା' ହେବ । କାରଣ କବି ନିଜେ ଗୀତରେ କୃଷ୍ଣ-ଚରିତ ରଚନା କରି ନିତ୍ୟ ଅଭ୍ୟାସ କରୁଥିବାର ମହାଭାରତ ଏକ ଅଂଶରେ ପ୍ରକାଶ କରିଅଛନ୍ତି (୨) । ଅନ୍ୟର ମଧ୍ୟ ପ୍ରାଚୀନ ଚଉତି-ଶାକାରମାନେ ପ୍ରାୟ ମଙ୍ଗଳାଚରଣ ସ୍ୱରୂପ ପ୍ରଥମେ କ ଅକ୍ଷରରେ

---

(୧) ପ୍ରସନ୍ନେ ଅଛି ମତେ ହେଲେ ସେ ଶାରଳାମ୍ବା, ଲଭ ତୁ ଯଶ ମହାଭାରତ ରଚ କରି ।

(୨) ଅଭ୍ୟାସଇ କୃଷ୍ଣର ଅବଲୀଳା । ସଦା ମୋର ହୃଦୟରେ ପ୍ରଭୁ କର ଖେଳା— ପୃ° ୨ ଆଶ୍ରମିକ ପର୍ବ ।

କୃଷ୍ଣଙ୍କର ନାମ ସ୍ମରଣ କରି ତାଙ୍କ ଚରିତ୍ର ପ୍ରକାଶ କରୁଥିଲେ ଯଥା,—କମଳ ଲୋଚନ ଶ୍ରୀହରି, କରେଣ ଶଙ୍ଖ ଚକ୍ରଧାରୀ । କଃ କୋଃ 'କବି କାଳନ୍ଦୀତୀରେ' 'କାଳୀ କଳେବର କହ୍ନାଇ' କୃଷ୍ଣ କଥା ଚନ୍ଦ୍ର ଗୋପୀ ଚକୋର'—ଗୋପୀଭାଷା, 'କୋଉଜନ୍ମେ କେଶବ ଯେ ମଥୁରାକୁ ଗଲେ' କେ, କୋଃ ।

ଚୃଗସ୍ତ ଜନଶ୍ରୁତି ଏହି ଯେ, "ଶାରଳା ଦାସ ବାଲ୍ୟରେ ହଳେ ଗୋଟିଏ ପାଣି ମାଠିଆ ମୁଣ୍ଡରେ ରଖି ଅଣ୍ଟିରୁ ମୁଠାଏ ୨ ମୁଢ଼ି ଖାଇବାଇ ହଳ କରୁଥିଲେ । ଏଣେ ରାଜକନ୍ୟାର ବିବାହ ନିମିତ୍ତ ଗୁଣବନ୍ତ ବର ଖୋଜା ପଡୁଥିଲା । ରାଜପକ୍ଷର ଲୋକେ ଏପରି ଅଦ୍ଭୁତକର୍ମା ହାଳିକକୁ ଦେଖି ଗୁଣବନ୍ତ ଓ ଚତୁରତାର ପରିଚୟ ପାଇ ହଳଠାରୁ ତାହାଙ୍କୁ ଆଦର କରି ରାଜଦ୍ୱାରକୁ ଘେନିଗଲେ । ରାଜପରିଷଦବର୍ଗମାନେ ତାହାଙ୍କର ଯଥାବିଧି ସମ୍ଭାଷଣ କରି ଯଥା ସମୟରେ ବିବାହ ମଣ୍ଡପରେ ବସାଇଲେ । ହଳତ୍ୟାଗୀ କୃଷକ ସେହି ମଣ୍ଡପରେ ତହିଁର କାଷ୍ଠ ବାଉଁଶ ପ୍ରଭୃତି ଉପକରଣ ପରୀକ୍ଷଣ କରି କୃଷିକର୍ମୋଚିତ ଉପକରଣର ଉପଯୋଗିତା ଓ ସାଦୃଶ୍ୟ ବିଷୟରେ ନାନା କଳ୍ପନା କରୁଥିଲେ । ଏହି ସମୟରେ ରାଜକନ୍ୟା ଅର୍ଘ୍ୟ ଥାଳୀ ଘେନି ବନ୍ଦାପନା କରିବାକୁ ଗଲେ । ତାହାଙ୍କୁ ଦେଖି ସରଳ କୃଷକ ସ୍ୱଭାବତଃ ଅତି ଭୀତ ହୋଇ ଖଟତଳକୁ ଲୁଚିଗଲେ । ରାଜକୁମାରୀ ତଦ୍ଦର୍ଶନରେ ସାତିଶୟ ଲଜ୍ଜିତା ହୋଇ ତାହାଙ୍କୁ ମୂର୍ଖ, ଅଧମ ପ୍ରଭୃତି ଶବ୍ଦରେ ବିଶେଷିତ କରି ସେହିଠାରେ ଥାଳୀ ଫିଙ୍ଗିଦେଇ ବିଷଣ୍ଣ ମନରେ ଅନ୍ତଃପୁରକୁ ଚାଲିଗଲେ । ସ୍ତ୍ରୀର ଧିକ୍କାରରେ ସେ ଆପଣାକୁ ବଡ଼ ଅପମାନିତ ମନେ କରି ସବୁଛାଡ଼ି କେବଳ ଜ୍ଞାନ ଲାଭ କରିବା ପାଇଁ ବ୍ୟାକୁଳ ହୋଇ ଏଣେ ତେଣେ ବୁଲିଲେ ଏବଂ ବରଦା ଶାରଦାଙ୍କ ମନ୍ଦିରରେ ଉପସ୍ଥିତ ହୋଇ ଦେଖିଲେ ଦେବୀ ସେଠାରେ ନାହାନ୍ତି । ତହୁଁ ସେ ଦ୍ୱାର ରୁନ୍ଧ କରି ତାହାଙ୍କର ଅନ

ଧ୍ୟାନ କଲେ । ଅନନ୍ତର ଦେବୀ ଉପସ୍ଥିତ ହୋଇ ଉକ୍ତ ଉପାସନାରେ ନିତାନ୍ତ ପ୍ରୀତ ହୋଇ ଏହି ବର ଦେଲେ 'ତୁ ବିଦ୍ୟାରେ ସବୁ ଜଗତ-ଠାରୁ ଏକା ବିଦ୍ୟାନଗରୀଙ୍କୁ ଜିଣି ପାରିବୁ ନାହିଁ । ସରସ୍ୱତୀ ପ୍ରାପ୍ତି କାଳରେ କବି ହଠାତ୍ ଏହି ଶ୍ଳୋକଟି ଦ୍ୱାରା ତାହାଙ୍କୁ ବନ୍ଦନା କରି-ଥିଲେ—"ଉତ୍ପଳ ପୂରିତ ଲୋଚନ ଧାରେ, ସ୍ତନଯୁଗ ଶୋଭିତ ମୁକ୍ତା (ମୁକୁତା) ହାରେ । ବୀଣା ପୁସ୍ତକ ରଞ୍ଜିତହସ୍ତେ, ଭଗବତି-ଭାରତି ଦେବି ନମସ୍ତେ" ସଙ୍ଗାଦେବୀ ରୂପବର୍ଣ୍ଣନାରେ ଦେବୀ ଉନ୍ନତ୍ ଭକ୍ତି ପ୍ରକାଶ କଲେ । ମାତ୍ର ଏହି ଦିନଠାରୁ ସେ ଦେବୀଙ୍କ ମନ୍ଦିରରେ ରହି ଆରାଧନା ଦ୍ୱାରା ଅଧିକାଂଶ ଜୀବନ ଯାପନ କରିବାକୁ ଲାଗିଲେ । ଦେବୀ ସେଥିରେ ଅତୀବ ପ୍ରୀତା ହୋଇ ଏକଦା ନିଶୀଥରେ ଆଦେଶ କଲେ । 'ତୁ ମହାଭାରତ ରଚନା କଲେ ମୁଁ ଅନ୍ତର ସନ୍ତୁଷ୍ଟ ହେବି । ସେ କହିଲେ ମୁଁ ମୂର୍ଖ, ମହାଭାରତ କିପରି ରଚନା କରିବି ! ତହୁଁ ଦେବୀ ଉତ୍ତର କଲେ ସେଥିପାଇଁ ଚିନ୍ତା କ'ର ନା । ତୁ କାଲି ଗଲାବେଳେ ବାଟରେ ଯେଉଁ ଲେଖନୀଟି ପାଇବୁ ତାହାକୁ ଘେନି କଳ୍ପବଟ ମୂଳରେ ବସିଲେ ତୋତେ,ସବୁ ଦୃଶ୍ୟ ହେବ ।" (୩)

ଶେଷୋକ୍ତ କାହାଣୀଟି ମହାକବି କାଳିଦାସଙ୍କ ସମ୍ବନ୍ଧରେ ମଧ୍ୟ ଶୁଣାଯାଏ ଏବଂ ଉକ୍ତ ଶ୍ଳୋକଟି କାଳିଦାସଙ୍କ ପ୍ରଥମ ରଚିତ ବୋଲି ଲୋକେ କହୁଥାନ୍ତି । କିନ୍ତୁ ଶ୍ଳୋକଟି ଯେପରି ଉତ୍କଳର ଗୃହେ' ପ୍ରଚଳିତ, ଅନ୍ୟ କୌଣସି ଦେଶରେ ସେପରି ନୁହେ । ଏ ଦେଶରେ ପ୍ରତ୍ୟେକ ଶୂଦ୍ର ଭଦ୍ର ଏବଂ ପାଲାବାଲାମାନେ 'ଉତ୍କଳଭାରତୀ' ସାରଳା ଦେବୀଙ୍କର ବନ୍ଦନାରେ ଏହି ଶ୍ଳୋକଟି ଅଦ୍ଭୁତ ବ୍ୟବହାର କରିଥାନ୍ତି । ଅନ୍ତର ମଧ୍ୟ ଶ୍ଳୋକର ଦ୍ୱିତୀୟ ପାଦର ଶେଷାଂଶ ଯଦି "ମୁକୁତା ହାରେ" ଅବିକଳ ଏହିପରି ପ୍ରଥମରୁ ଥାଏ, ତାହାହେଲେ ଏହା ସାରଳାଦାସଙ୍କ ଦ୍ୱାରା ରଚିତ ହୋଇଥିବା ବଚନ ନୁହେ । ସମ୍ଭବତ

(୩) ସେ ଦେବୀ ଦେଲେ ମୋତେ ଲେଖନ ସେ ଗୋଟି । ମହା:

ମହାକବଙ୍କର ଦୃଷ୍ଟି ଗମ୍ଭୀରତମ ପ୍ରଦେଶକୁ ନ ଯାଇ ବାହ୍ୟରୂପ ବର୍ଣ୍ଣନ ଏବଂ ଶ୍ଳୋକପଦାନ୍ତ ସମାସାନ୍ତ ଦୃଷ୍ଟି ହିଁ ଭ ନ ଥାନ୍ତା । ଏହି କିଂବଦନ୍ତୀ କଳ୍ପିତ ପରିବର୍ତ୍ତିତ ଆକାରରେ * ଏ ଦେଶରେ ତଥା ଅନ୍ୟତ୍ର କାଳିଦାସଙ୍କ ସମ୍ବନ୍ଧରେ ପ୍ରଚଳିତ ଥିଲେହେଁ ତାହା ରଘୁବଂଶାଦି ମହାକାବ୍ୟ ପ୍ରଣେତା ମହାକବି କାଳିଦାସଙ୍କ ପ୍ରତି ପ୍ରଯୁଜ୍ୟ ନୁହେ ବୋଲି ବର୍ତ୍ତମାନ ପ୍ରତ୍ନତତ୍ତ୍ୱବିଦ୍ ମନୀଷୀମାନେ ସିଦ୍ଧାନ୍ତ କରିଅଛନ୍ତି । ଏହି ଜନଶ୍ରୁତିର ଐକ୍ୟ ଯୋଗୁଁ ଅନେକେ ଅଧୁନାପି କହିବାକୁ ସାହସ କରୁଅଛନ୍ତି ଯେ କାଳିଦାସ ସେହି ଶାରଳାଦାସ । ସ୍ୱର୍ଗାରୋହଣ ପର୍ବର ପ୍ରାରମ୍ଭବର୍ତ୍ତିତ ଏହି କେତୋଟି ପଂକ୍ତି ମତର ପୋଷକତା କରୁଅଛି । "ତୁମ୍ଭେ କହିପାର କମ୍ପା ମୁହିଁ ନ ପଢ଼ିଲି, ମନବୁଦ୍ଧି ଅଟେ ମୋର ଜାଣି ମୁଁ ନ ଥିଲି । କଇଳାସ ଦ୍ୱାରପାଳ ନାମ ମୋର ନନ୍ଦୀ । ଶାସ୍ତ୍ରର ଆଗମେ ହରିଗଜ୍ୟକୁ ବନ୍ଦି । ଯେଉଁପରି ରଙ୍ଗରସ ସେ ମତେ ବୋଇଲେ । ମାତା ପୋଇଲୀ ସଙ୍ଗମ ବୋଲିଣ କହିଲେ, ତାହା ଶୁଣି ବଦ୍ଧୃଷ୍ଟକ ଦେଲେ ମୋତେ ଶାପ । ତହୁଁ ଦୋଷୀ ହୋଇଲି ମୁଁ ମନୁଷ୍ୟସ୍ୱରୂପ । ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ । ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ । ତୃତୀୟଜନ୍ମରେ ମୁଁ ଶାରଳାଦାସ କବି, ଆଉ ଜନ୍ମେ ମୁଁ ମର୍ତ୍ତ୍ୟ-ମଣ୍ଡଳେ ଜନ୍ମିବି । ଉକ୍ତ କଥା କହି ସାର ଏ ମର୍ତ୍ତ୍ୟମଣ୍ଡଳ । ତେବେ ଯାଇ ହୋଇବି ମୁଁ ଶିବ ଦ୍ୱାରପାଳ । ମୋର ଜାତି ନ ଜାଣେ ମୁଁ ଜାଣଇ ଯେ ଏହା । ସିଦ୍ଧଚଣ୍ଡୀ ଶ୍ରୀଶାରଳା କଲେ ଯାହା ଯାହା" । ସ୍ୱଃ ପଃ ୬ପୃ ।

ଏହା କବିଙ୍କର ଉକ୍ତିପରି ଜଣାଯାଉ ନାହିଁ । ମହାଭାରତର ଶେଷ ପର୍ବର ମୂଳ ଅଂଶ ପ୍ରକ୍ଷିପ୍ତ ପରି ବୋଧ ହୁଏ । ଯମ ସୂଚି ପ୍ରସଙ୍ଗରୁ ହଠାତ୍ ଏ କଥାର ଅବତାରଣା ହୋଇଅଛି । ଏକେ ପୂର୍ବ ପ୍ରସଙ୍ଗ ସହିତ ଏହାର କିଛିହିଁ ସମ୍ପର୍କ ନାହିଁ । ଦ୍ୱିତୀୟରେ ପାଠକେ

* ଏହା 'ଅସ୍ତି କଶ୍ଚିତ୍ ବାଗ୍ ବିଶେଷଃ' ଅବଲମ୍ବନରେ କଳ୍ପିତ ।

ବସ୍ତ୍ର କରନ୍ତୁ "ଭୁମ୍ଭେ କହିପାର" ଏପରି ପ୍ରୟୋଗ ପ୍ରାଚୀନ କ ନା ! ଚଣ୍ଡୀପୁରାଣରେ ଗଣେଶଙ୍କ ଶାପ କହିବାର ଉଦ୍ଦେଶ୍ୟ ଏହି ହୋଇପାରେ—ଶାରଳାଦାସ ଚଣ୍ଡୀଙ୍କର ପ୍ରଧାନ ଉପାସକ ଏବଂ ଜଗନ୍ନାଥ ଭକ୍ତ ହେବାରୁ ଶୂଦ୍ରଜାତିର ଉପାସ୍ୟ ଦେବତା ଗଣେଶଙ୍କ ପ୍ରତି ଅଭକ୍ତି ପ୍ରଦର୍ଶିତ ହୋଇଥିଲା । ସୁତରାଂ ବଗ୍ଦେଶ୍ୱରଙ୍କ ଶାପର ଆଶଙ୍କା ହେଉଅଛି*। କାଳିଦାସ ନାମରୁ ଜଣାଯାଏ ସେ କବି କାଳୀଙ୍କର ଦାସ । 'କାଳୀକପୂର୍ବ' ରଚୟିତା ମହାକାଳ ଜଣେ କାଳୀଭକ୍ତ । ଚଣ୍ଡୀପୁରେ କବି ଶାରଳା ଚଣ୍ଡୀ ଉପାସକ ଏବଂ ଚକ୍ରବର୍ତ୍ତୀ ନୃସିଂହପୁରାଣରଚୟିତା ପୀତାମ୍ବର ଦାସ ଜଣେ ଶାରଳା ଚଣ୍ଡୀ ଭକ୍ତ । ଅତଏବ ଏହିମାନେ ସମସ୍ତେ ଏକଆତ୍ମା ! ଅନ୍ୟ ଏକ ସନ୍ଦେହର କାରଣ ଏହି ଯେ "ମୋର ଜାତି ନ ଜାଣେ ମୁଁ ଜାଣଇଟି ଏହା" ଏକଥା କବି କାହିଁକି କହିବାକୁ ଯାନ୍ତେ ? ହୁଏତ ତପସ୍ୱୀମାନେ ନିଜ ଜାତିର ଟେକ ରଖିବା ଲାଗି ପୂର୍ବଜାତିର ଅପଭ୍ରଂଶ ଉଦ୍ଦେଶ୍ୟରେ ଏପରି ଲେଖିଥିବେ* । ସେ ଯାହା ହେଉ ଶାରଳାଦାସଙ୍କ ସମ୍ବନ୍ଧରେ ଏ ପ୍ରକାର କିଂବଦନ୍ତୀମାନ ସାଧାରଣଙ୍କ ମୁଖରେ ବୃଦ୍ଧିପାଇବାର କିଛି ବିଶେଷ କାରଣ ଅଛି । ସେ ଗୁଡିକ ଅଲୌକିକ ଘଟନାପୂର୍ଣ୍ଣ ହେବାର ଗୋଟିଏ ପ୍ରଧାନ କାରଣ ଏହି ଯେ, ଏକେ କବି ଗ୍ରନ୍ଥାଦି ଅଧ୍ୟୟନ କରି ନାହାନ୍ତି କିଂବା ସଂସ୍କୃତ ଭାଷାର ମହାଭାରତପରି ବିରାଟ ଗ୍ରନ୍ଥ କିପରି ରଚନା କଲେ ? ଅଥଚ ସେକାଳରେ କେହି ଦେଶ ଭାଷାରେ କବିତାଦି ରଚନା କରୁ ନ ଥିଲେ । କବିଙ୍କର କବିତ୍ୱରେ ଏହି ଅସାଧାରଣ ଶକ୍ତିମତ୍ତାର ପରିଚୟ ପାଇ ସାଧାରଣତଃ ଏହା ମନେହୁଏ ଅବଶ୍ୟ କୌଣସି ଐଶୀଶକ୍ତିର ଆଦେଶ ନ ହେଲେ ଜଣକ ଦ୍ୱାରା ଏପରି ମହତ୍କର୍ମ

* ...ତପସ୍ୱୀ ବଂଶଧରମାନେ ନିଜର ସମ୍ବନ୍ଧରେ ସନ୍ଦିହାନ । ସେମାନେ ଆପଣାକୁ ସାଧାରଣ ବୈଶ୍ୟ କରଣଙ୍କ ପରି ମଣନ୍ତି ନାହିଁ ।

ସାଧିତ ହୋଇ ପାରିବ ନାହିଁ । ଦ୍ୱିତୀୟ କଥା କବି ଏତେବଡ଼ ଗ୍ରନ୍ଥ ଲେଖି ସେଥିରେ କେବଳ ନିଜର ନାମ ଓ ଧାମ ଭିନ୍ନ ଆଉ କିଛି ବିଶିଷ୍ଟ ପରିଚୟ ଦେଇ ନାହାନ୍ତି । ସେ ଏହି ଗ୍ରନ୍ଥରେ ସହସ୍ରବାର ଆପଣାକୁ ଶାରଳା ଉପାସକ ଓ ବିଷ୍ଣୁଭକ୍ତ ବୋଲି ପରିଚୟ ଦେଇ ଅଛନ୍ତି, କିନ୍ତୁ କୁହାପି ଅନ୍ୟାନ୍ୟ କବିଙ୍କପରି ପିତାମାତାଙ୍କ ନାମ ଜନ୍ମ କାଳଜାତି ବ୍ୟବହାଯ୍ୟାଦିର କଥା ଉଲ୍ଲେଖ କରି ନାହାନ୍ତି । ଏହି ଆତ୍ମଗୋପନ ତଦୀୟ ଚରିତକୁ ଅଲୌକିକ ଘଟଣାବଳୀରେ ପୂର୍ଣ୍ଣ କରିବାର ଦ୍ୱିତୀୟ ହେତୁ ହୋଇଅଛି । ଏହି କିଂବଦନ୍ତୀମାନ ତଦାନୀନ୍ତନ ସମାଜର ରୁଚିଅନୁରୂପ ଅପ୍ରାକୃତ କଳ୍ପନା ରାଗରେ ଅତିରଞ୍ଜିତ ଏବଂ ସ୍ଥୂଳ ହୋଇ ଥିଲେହେଁ ତାହାର ମଜ୍ଜାରେ ଅବଶ୍ୟ ସୂକ୍ଷ୍ମ ସତ୍ୟ ନିହିତ ଅଛି । ପ୍ରତ୍ୟେକ ବିଶିଷ୍ଟ ପୁରୁଷଙ୍କ ସମ୍ବନ୍ଧରେ ସର୍ବକାଳରେ ତାହାଙ୍କ ମାହାତ୍ମ୍ୟସ୍ଥାପନ ଓ ଅସାଧାରଣତାର ପରିଚୟ ଦେବାଲାଗି ଏହିପରି ଅତିରଞ୍ଜନ ହୋଇଥାଏ । ସେଥିରୁ ସତ୍ୟ ନିଷ୍କାଶିତ କରିବା ଆମ୍ଭମାନଙ୍କର କାର୍ଯ୍ୟ । ଯଥାର୍ଥରେ ଚତୁରଲୋକେ ସେମାନଙ୍କ ଜୀବନର କେତେକ ପ୍ରଧାନ ଘଟଣାକୁ ଭାବୀ ପୁରୁଷମାନଙ୍କ ପାଇଁ କଳ୍ପନା ତୂଳିକାରେ ସୁରଞ୍ଜିତ କରି ସ୍ଥୂଳଦୃଷ୍ଟି ଅଜ୍ଞସାଧାରଣଙ୍କର ଚିତ୍ତରଞ୍ଜକବସ୍ତୁ କରି ଦିଅନ୍ତି । ଆଉ ଅନ୍ଧ ବିଶ୍ୱାସୀ ସାଧାରଣ ଶ୍ରୋତା ବା ପାଠକେ ସେହି ବାହ୍ୟସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପରିତୃପ୍ତି ଲାଭ କରନ୍ତି, ଅଭ୍ୟନ୍ତରୀଣ ରୂପ ଦେଖିବାକୁ ଚେଷ୍ଟା କରନ୍ତି ନାହିଁ କି ସେ ପ୍ରବୃତ୍ତି ତାଙ୍କର ହୁଏ ନାହିଁ । କବିଙ୍କ ଜୀବନ ବୃତ୍ତାନ୍ତ ଅଦ୍ୟଯାଏ ସେହିପରି ଚିତ୍ତରଞ୍ଜକ ମୋହନ ବେଶରେ ସାଧାରଣଙ୍କ ଦ୍ୱାରା ପରିଗୃହୀତ ହୋଇ ଆସୁଥିଲେହେଁ ଏହାର ଅଭ୍ୟନ୍ତରୀଣ ଉପାଦାନ ଜାଣିବା ଅତିସହଜ । କାରଣ ଏଥିରେ ଅତିରଞ୍ଜନମାତ୍ରା ଅପେକ୍ଷାକୃତ ଅଳ୍ପ । ଦେବୀ ନିଜରୂପ ବର୍ଣ୍ଣନାରେ କିଞ୍ଚିତ୍ ଅସନ୍ତୁଷ୍ଟ ହୋଇ କହିଲେ "ତୁ ସବୁ କହିବୁ ମାତ୍ର ବାଣୀକୁ ଜିଣିପାରିବୁ ନାହିଁ"-ଯଥାର୍ଥରେ

ବାଣୀବର୍ଣ୍ଣନା କବିଙ୍କର ଦୋଷାବହ । କବି ଏତେ ଗ୍ରନ୍ଥ ରଚନାକରି ପାରିଲେ ସବୁ-ପଢ଼ିଲେ ବୁଝିଲେ, ମାତ୍ର ବାଣୀ ଭାଷା ସଂସ୍କୃତରେ ପ୍ରବେଶ କରି ପାରିନାହାନ୍ତି । ଜନଶ୍ରୁତିରେ ଦେବୀ କହିଲେ 'ତୁ ଯେଉଁ ଲେଖନୀଟି ପାଇବୁ, ତାକୁ ଯେବେ କଳ୍ପବୃକ୍ଷ ମୂଳରେ ବସିଲେ ତୋତେ ସବୁ ଦୃଶ୍ୟ ହେବ ।' ଯଥାର୍ଥରେ କବି ପୂର୍ବ ବ୍ୟବସାୟ ଛାଡ଼ି ଭାବପରିବର୍ତ୍ତନବଶତଃ ଶେଷରେ ଲେଖନୀର ଆଶ୍ରୟ ଗ୍ରହଣ କଲେ ଏବଂ ତଦ୍‌ଭାଗସ୍ଥ କଳ୍ପବୃକ୍ଷ ମୂଳରେ ତାହାଙ୍କ ରଚନା କାଳର ଅଧିକାଂଶ ଅତିବାହିତ ହୋଇଥିଲା, ଶାରଳା ଦେବୀ ଯାହା ଡାକୁଥାନ୍ତି-ତାହା ଲେଖୁଥାନ୍ତି ; ଏକଥାଟି କେବଳ ପ୍ରବାଦ ବାକ୍ୟ ନୁହେ; କବି ଗ୍ରନ୍ଥ ମଧ୍ୟରେ ଏକଥା ବାରଂବାର ଉଲ୍ଲେଖ କରି ଅଛନ୍ତି* । ଏପରି ଉକ୍ତି ପ୍ରାଚୀନ କବିଙ୍କ ମୁଖରେ ଶୋଭାପାଏ । କେବଳ ଏହି ଓଡ଼ିଶାରେ ନୁହେ, ଭାରତର ଅନ୍ୟାନ୍ୟଖଣ୍ଡରେ ମଧ୍ୟ ଏହି ଅଭ୍ୟାସ ଦେଖାଯାଏ ମହାରାଷ୍ଟ୍ର ଦେଶର ପ୍ରାଚୀନ କବି ତୁକା-ରାମ ସ୍ୱବଂଶର ଇଷ୍ଟ ଦେବତା ବିଠଲଙ୍କ ମନ୍ଦିରରେ ବସି ଯାହା ରଚନା କରୁଥିଲେ ସେ ସମସ୍ତ ବିଠଲପ୍ରସାଦ ବୋଲି ପ୍ରକାଶ କରୁଥିଲେ । ଏହି ପରି କହିବାର କାରଣ ପ୍ରାଚୀନ କବିଗଣ ଦେବାର୍ପିତପ୍ରାଣ, କୌଣସି ପ୍ରକାର ଆତ୍ମବଡ଼ିମା ବା ବିଦ୍ୟାଭିମାନ ତାଙ୍କ ହୃଦୟରେ ସ୍ଥାନ ପାଉ ନଥିଲା । ସେମାନେ 'ଯତ୍କରୋଷି ଯଦଶ୍ନାସି ଯଦ୍ଦଦାସି କରୋଷି ଯତ୍ ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣଂ' ଗୀତାର ଏହି ନୀତିଅନୁସାରେ ଯାହା କିଛି ଅନୁଷ୍ଠାନ କରୁଥିଲେ, ସେ ସମସ୍ତ ଇଷ୍ଟଦେବାର୍ପିତ କରୁଥିଲେ ।

---

* ତମ୍ଭାରେ କହିଲ ମୋତେ ଶାରଦା ଶାରଦା । ତେଣୁ କରି ଲୁଚେ ମୋର ଗତି ଯେ ତୁରିତ । ଭୀ: ପ । ସେ ଦେବୀର ପ୍ରସାଦେ କଲଇ ମୋର ଚିତ୍ତ । ତା ସମାନେ କହିବଇ ଶ୍ରୀ ମହାଭାରତ । ଆ: ପ । ବାବୁଲପ୍ରଦରେ ମୁଁ ଯେ ପ୍ରତ୍ୟେକେ ଦେଖଇଁ ସେ ଯାହା କହନ୍ତି ମୁହିଁ ତାହା ଯେ ଲେଖଇଁ ସ୍ୱ: ପ ।

ଅସ୍ମାନଙ୍କର ଏହି କବି ସେହି ମଠର ଜଣେ ପ୍ରଧାନ ଶିଷ୍ୟ । ସେ ଏକ ସ୍ଥାନରେ କହୁଅଛନ୍ତି, ଦେବୀ ମୋତେ ସ୍ୱପ୍ନରେ ଯାହା କହୁଥାନ୍ତି, ତାହା ମୁଁ ଦିବସରେ ଲେଖେଁ । କବି ମଠର ନିଶୀଥରେ ଏକାଗ୍ରଧ୍ୟାନ ଦ୍ୱାରା ଯେଉଁ ବାଣୀପ୍ରସାଦ (ଭାବରାଶି) ଲାଭ କରୁଥାନ୍ତି, ତାହା ଦିବସରେ ଲେଖନୀ ସାହାଯ୍ୟରେ ଲିପିବଦ୍ଧ କରନ୍ତି, ଏହା ସ୍ୱାଭାବିକ ଏବଂ ସର୍ବଜନସମ୍ମତ । ଯଥାର୍ଥରେ ଦେବୀ ଭାବ ଦିଅନ୍ତି କି ନାହିଁ, ଏ କଥାର ପ୍ରମାଣ ଅନ୍ୟଦ୍ୱାରା ହେବା ତେଣିକି ଥାଉ କବି ନିଜ ମୁଖରେ ପ୍ରମାଣ କରି ଦେଇ ଅଛନ୍ତି । 'ଯାହା ମୋତେ ଦୃଶ୍ୟ ହୁଏ ତାହା ମୁଁ ଲେଖଇଁ । ଅତି ଅଗୋଚର ଯେ ନପୃଣ ନ ଆସଇ । କହିବା ମହାଭାରତ ଠିକ ଠିକ ଭାବେ । ଶୂଦ୍ରମୁନି ଶାରଳା ଦାସ କଥା ପ୍ରସ୍ତାବେ । ଆ, ପ, ପୃ ୩୨ । ଏ ମହାଭାରତ ହେଲା ବ୍ୟାସଦେବ ବାକ୍ୟେ-ମୁଁ ତାହା ଲେଖିଲି ଯେ ମୋର ଯେତେ ଶକ୍ୟେ, ସ୍ୱ, ପ, ପୃ ୩୪ । ଏ ସ୍ଥଳରେ କଣ ଦେବୀ ନ ଥିଲେ ? କବି କହୁଅଛନ୍ତି ଯେ, ଅଗାଧ ମହାଭାରତରୁ ମୁଁ ମୋହର ଶକ୍ତ୍ୟନୁରୂପ ବାଛି ୨ କେତେକ କଥା କହୁଅଛି । ସମସ୍ତ କଥାର ବର୍ଣ୍ଣନା ମୋହର କ୍ଷୁଦ୍ର ଶକ୍ତିର ଅଜ୍ଞାତ । ତଥାପି ଅଧିକାଂଶ ସ୍ଥାନରେ ଦେବୀଙ୍କ ନାମ କରିବାର ଉଦ୍ଦେଶ୍ୟ କଣ ? ଏତଦ୍ଭିନ୍ନ ଆଉ ଏକ ଆଶଙ୍କା ଏହି ହୁଏ ଯେ, କବି ଅଳ୍ପ ଜାଣି କେବଳ ମହାପୃସୀ କଳ୍ପନାବଳରେ ଏପରି ଦୁଃସାହସିକ କର୍ମରେ ପ୍ରବୃତ୍ତ ହୋଇଅଛନ୍ତି । ସୁତରାଂ ପୁଣ୍ୟ ମହାଭାରତ ଗ୍ରନ୍ଥରେ ବହୁ ଦୋଷ ରହିବାର ସମ୍ଭାବନା । ହୁଏତ ସେଥିଯୋଗୁଁ ଧର୍ମଭୀରୁ ପୁରୁଷମାନଙ୍କ ତୀବ୍ର କଟାକ୍ଷରୁ ରକ୍ଷା ପାଇବା ପାଇଁ ସ୍ୱକୃତିକି ଶାରଳା ଦେବୀଙ୍କ ଭାଷିତ ବୋଲି ପ୍ରକାଶ କରିଥିବେ ।

ଉତ୍କଳରେ ଯେତେ ପୁରାଣ, ରାମାୟଣ ଓ ମହାଭାରତ ଲିଖିତ ହୋଇଅଛି, ସେ ସମସ୍ତଙ୍କ ଅପେକ୍ଷା ଶାରଳାମହାଭାରତ ଆକାରରେ

ମହାଭାରତର ରଚନା- କଉ । ସର୍ବ ପ୍ରଥମେ କବି କେଉଁଠୁ ଉପକରଣ ଭାରତୀୟ ସମାଜର ସଂଗ୍ରହ କରି ଏହି ମହାପ୍ରାସାଦ ନିର୍ମାଣ କଲେ ? ଅବସ୍ଥା ଓ ରୁଚି । ବୋଧ ହୁଏ ସେ କାଳରେ ଉପକରଣ ବଡ଼ ସୁଲଭ ଥିଲା । ଏହି ମହାଭାରତର ଉପକରଣ ଜାଣିବାକୁ ହେଲେ ଆମ୍ଭ- ମାନଙ୍କୁ କାଳସ୍ରୋତର ପ୍ରତିଲୋମରେ ପୁଣି ସେହି କପିଳେନ୍ଦ୍ରଦେବଙ୍କ ଶାସନକାଳ ମଧ୍ୟରେ ପ୍ରବେଶ କରି ତଦାନୀନ୍ତନ ସମାଜ ଏବଂ ତହିଁର ସ୍ୱାଭାବିକ ଦେଶର ଅବସ୍ଥାଦି ଦେଖିବାକୁ ହେବ । ଇତିହାସ ଦର୍ପ- ଣରେ ଆମ୍ଭେମାନେ ଦେଖି ପାରୁଅଛୁଁ ଯେ; କପିଳେନ୍ଦ୍ର ଦେବ ଅତି ସାମାନ୍ୟ ଅବସ୍ଥାରୁ ସୌଭାଗ୍ୟ କ୍ରମେ ଅତି ବିଶାଳ ରାଜ୍ୟର ଅଧିକାରୀ* । ଦକ୍ଷିଣରେ କୃଷ୍ଣାତୀର ପର୍ଯ୍ୟନ୍ତ ଏହାଙ୍କର ପ୍ରତାପ ପତାକା ଉଡ୍ଡୀୟମାନ ଥିଲା । ଅଷ୍ଟାଦଶ ବୀରପୁତ୍ର ପୁଣି ଅଧିକ ଆନନ୍ଦ ବର୍ଦ୍ଧନ କରୁଥିଲେ । ତଥାପି ଏହି କାମୁକ ରାଜାଙ୍କ ନିର୍ବାଚନ ସଂସାରେ ଉପପତ୍ନୀ ଗର୍ଭଜାତ ପୁରୁଷୋତ୍ତମ ସ୍ୱୀୟ ଉତ୍ତରାଧିକାରୀ ହୋଇଥିଲେ । ନିଜ ପୁତ୍ରମାନେ ପୈତୃକ ରାଜ୍ୟର ଅଧିକାରୀ ନ

---

* ଭାନୁଦେବବଂଶୀୟ ଶେଷ ରାଜା ନିଃସନ୍ତାନ ଥିଲେ ; ମୃତ୍ୟୁ ପୂର୍ବେ ସେ ଭକ୍ତ ବଂଶୀୟ କପିଳସାମନ୍ତ ନାମକ ଜଣଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । କଥିତ ଅଛି ଏହି କପିଳସାମନ୍ତ ଏକସମୟରେ ଜଣେ ବ୍ରାହ୍ମଣର ଗୋରୁଚରଣ କର୍ମରେ ନିଯୁକ୍ତ ଥିଲେ । ଜଗନ୍ନାଥ ମନ୍ଦିରକୁ ଯାଇ ଯାଉ ଶେଷ ରାଜା ନେତ୍ର ବାସୁଦେବ କପିଳଙ୍କର ସବିଶେଷ ବୁଦ୍ଧିମତ୍ତାରେ ପରିଚୟ ପାଇ ତାହାଙ୍କୁ ନିଜର ଭବିଷ୍ୟ ଉତ୍ତରାଧିକାରୀ ମନୋନୀତ କଲେ । କଣ୍ଠକାଳ ମଧ୍ୟରୁ କପିଳ ଆପଣାର କାର୍ଯ୍ୟଦକ୍ଷତାର ପରିଚୟ ଦେଇ ବାସୁ- ଦେବଙ୍କ ରାଜସଭାର ମନ୍ତ୍ରିତ୍ୱପଦରେ ବ୍ରତକାର୍ଯ୍ୟ ହେଲେ । କେହି କହନ୍ତି ଶେଷ ରାଜା ରାଜତ୍ୱ କରୁଥିବା ସମୟରେ ଉତ୍ତରରୁ ମୁସଲମାନମାନେ ଆସି ଓଡ଼ିଶା ଆକ୍ରମଣ କରି ଥିଲେ । କପିଳ ସେମାନଙ୍କ ସହିତ ସନ୍ଧିସ୍ଥାପନାର୍ଥ ପ୍ରେରିତ ହୋଇ ପ୍ରତିଭୂରୂପେ ସେମା- ନଙ୍କ ଶିବିରରେ ରକ୍ଷିତ ହୋଇଥିଲେ ଏବଂ ରାଜା ବାସୁଦେବଙ୍କ ମୃତ୍ୟୁ ଉତ୍ତାରେ ଓଡ଼ିଶାର ରାଜ୍ୟଭାର ଗ୍ରହଣ ନିମନ୍ତେ ପୁନଃ ପ୍ରେରିତ ହେଲେ । ଷ୍ଟର୍ଲିଂକୃତ ଓଡ଼ିଶା ଇତିହାସ ପୃ ୭୨ ।

ଯାଇ ଇତସ୍ତତଃ ଭ୍ରମଣ କରି ସ୍ୱବାହୁବଳରେ ଓଡ଼ିଶାର ସୀମାନ୍ତ ପ୍ରଦେଶମାନଙ୍କର ରାଜ୍ୟବିସ୍ତାର କଲେ । ଏବେ ହିନ୍ଦୁସାଧାରଣ ଅଦୃଷ୍ଟବାଦୀ, ତହିଁରେ ପୁଣି ଉକ୍ତ ହୁଇ ଘଟନା ପ୍ରତ୍ୟେକ କରି 'ଦଂ ନକରେଦ୍ଧ ବାଧ୍ୟର୍ଯଦରୁଷ୍ଟଃ କିଂ ନ କରେଦ୍ଧ ସ ଏବ ହି ତୁଷ୍ଟଃ' ଏହି ଧାରଣା ସମାଜ ମଧ୍ୟରେ ଦୃଢ଼ୀଭୂତ ହୋଇଥିଲା । ତଥାପି ସେମାନଙ୍କ ହୃଦୟରେ ସାହସ ଓ ଉଦ୍ୟୋଗ ଯଥେଷ୍ଟ ପରିମାଣରେ ଥିଲା । ଗଙ୍ଗବଂଶୀୟ ରାଜାମାନେ ବହୁବାର ଏମାନଙ୍କୁ ନେଇ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରି ଜୟଲାଭ କରିଥିଲେ ଏବଂ ଯୁଦ୍ଧର ସମ୍ଭାବନାରେ ବହୁ ଗଜ, ଅଶ୍ୱ ଓ ପଦାତିକର ଭରଣପୋଷଣ ବ୍ୟୟଭାର ବହନ କରୁ ଥିଲେ । ଆକସ୍ମିକ ବିପଦରେ ସୈନ୍ୟ ସଂଗ୍ରହ ଲାଗି କେତେକ ପ୍ରଜାଙ୍କୁ ନିଷ୍କର ଭୂମିମଧ୍ୟ ଛାଡ଼ି ଦିଆଯାଇ ଥିଲା । ଏହା ଛଡ଼ା ସେମାନଙ୍କର ରାଜତ୍ୱରେ ପୂର୍ତ୍ତିକାର୍ଯ୍ୟାଦିରେ ମଧ୍ୟ ପ୍ରଚୁର ବ୍ୟୟ ହୋଇଥିବାର ନିଦର୍ଶନ ରହିଅଛି । ଏତେ ବ୍ୟୟ ହୋଇ ସୁଦ୍ଧା ରାଜକୋଷ ଶୂ[illegible] ହୋଇ ନ ଥିଲା, କିମ୍ବା ପ୍ରଜାମାନଙ୍କର ଅଭାବ ନ ଥିଲା । ସେମାନେ ସାଧାରଣ ବ୍ୟୟ ନିର୍ବାହ କରି କିଛି୨ ସଞ୍ଚୟ ଦ୍ୱାରା ସୁଖରେ କାଳଯାପନ କରୁ ଥିଲେ । ରାଜକୋଷ ବହୁ ଧନ ରତ୍ନ ସମନ୍ୱିତ ଥିଲା । ଏକା ଅନଙ୍ଗ ଭୀମଦେବ ୧୨ ବର୍ଷ ରାଜତ୍ୱ ମଧ୍ୟରେ ତ୍ରିଳଣ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଏବଂ ୭ ଲକ୍ଷ ୮୦ ହଜାର ସୁବର୍ଣ୍ଣ ମୁଦ୍ରାର ଇତି ମଣି ମୁକ୍ତା ସଞ୍ଚୟ କରିଥିଲେ । ଏକଥାମାନ ଶୁଣି ପ୍ରଜାଗଣ ରାଜକୋଷସ୍ଥ ଧନର କଳନା କରି ପାରୁ ନଥିଲେ । ବିଶେଷତଃ ସୁବିଧା ନଥିବାରୁ ଅଥବା ତତ୍ସମ୍ବନ୍ଧରେ ପୁସ୍ତକାଦି ଲିଖିତ ହୋଇ ନଥିବାରୁ ଏସବୁସମ୍ବନ୍ଧରେ ଜନଶ୍ରୁତି ନାନା ଆକାର ଧାରଣ କରୁଥିଲା । ସାଧାରଣ ପ୍ରଜା ଏ ଦେଶଭାଷାର କୌଣସି ପୁସ୍ତକ ନପାଇ ସର୍ବଦା ଏହିପ୍ରକାର ଜନଶ୍ରୁତିରେ ଆତ୍ମବିନୋଦନ କରୁଥିଲେ ଏବଂ କେହି୨ (ଯେ ଅପେକ୍ଷାକୃତ ଚତୁର) ନିଜ କଳ୍ପନାଟଳ୍ପପରେ ଅଦ୍ଭୁତ ବିଶେଷିତ କରି ଦେଉ

ଥିଲେ । ଏହି ଜନଶ୍ରୁତି ସେମାନଙ୍କ ସାହିତ୍ୟର ଏକମାତ୍ର ସମ୍ବଳ ହେବାରୁ ସେକାଳରେ ନାନାସ୍ଥାନ ଏବଂ ବ୍ୟକ୍ତି ସମ୍ବନ୍ଧରେ ନାନା-ପ୍ରକାର ସଂବଦନ୍ତୀ ଅବାଧ ଭାବରେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । ତଦାନୀନ୍ତନ ପ୍ରଜାସାଧାରଣଙ୍କର ଗାମ୍ଭୀର୍ଯ୍ୟ ବୁଦ୍ଧିମତ୍ତା ଏବଂ କଳ୍ପନା ପ୍ରଭୃତି ସେହି ସଂବଦନ୍ତୀରେ ପର୍ଯ୍ୟବସିତ ହେଉଥିଲା । ଏହି ସଂବ-ଦନ୍ତୀ ଗୁଡ଼ିକର ସତ୍ୟାସତ୍ୟ ପ୍ରତି ଆଦୌ ଦୃଷ୍ଟି ନ ଦେଇ ଅନ୍ଧବିଶ୍ୱାସୀ ସାଧାରଣ ଶ୍ରୋତୃବର୍ଗ ଆଗ୍ରହ ଏବଂ ମହାନନ୍ଦ ସହକାରେ ତାହା ଶ୍ରବଣ କରି ଚିତ୍ତ ରଞ୍ଜନ କରୁଥିଲେ । ଏଣେ ବୌଦ୍ଧ ଧର୍ମ ଓଡ଼ି-ଶାରେ ଲୁପ୍ତ ପ୍ରାୟ ହୋଇଥିଲେହେଁ ତାହାର ବିଳମ୍ବକାଳୀନ ନାନା ବିରୂପ ଉପଧର୍ମର ସୃଷ୍ଟିର ଓ ପ୍ରସାର ସଙ୍ଗେ ସଂବଦନ୍ତୀ ପ୍ରିୟ ପୂର୍ବ ସମାଜ ଅଧିକ କିମ୍ଭୂତକିମାକାର ଧାରଣ କଲା ? ଶକୁନଶାସ୍ତ୍ରର ମର୍ମ ଆବାଳବୃଦ୍ଧବନିତା ସମସ୍ତଙ୍କୁ ଅଳ୍ପାଧିକରେ ଜଣାଥିଲା ଏବଂ ଶ୍ରଦ୍ଧା ସହକାରେ ତାହା ପାଳିତ ହେଉଥିଲା । ବିବାହରୁ ସାମାନ୍ୟ ଯାତ୍ରା ପର୍ଯ୍ୟନ୍ତ ଏବଂ ଧାନବୁଣିବାଠାରୁ ଶାଗ ବୁଣିବା ପର୍ଯ୍ୟନ୍ତ ସର୍ବପ୍ରକାର ନିତ୍ୟ ନୈମିତ୍ତିକ ଅନୁଷ୍ଠାନରେ ଜ୍ୟୋତିଷ ସମ୍ମତ ଯୋଗଲଗ୍ନାଦି ଅଶିଥିଳ ଭାବରେ ବିଚାର କରାଯାଉଥିଲା । ସାଧାରଣ ଶିକ୍ଷା ଓ ଧର୍ମୋପଦେଶରେ ଏକାନ୍ତ ଅଭାବ ଥିବାରୁ ଗ୍ରାମ୍ୟ ଭାବ ଓ କଳହ ସାଧାରଣଙ୍କର ମୁଖଭୂଷଣ ହୋଇ ଥିଲା । ଏପରିକି ସେମାନଙ୍କର ହାସ ପରିହାସଠାରୁ ଉପସ୍ଥାର ପର୍ଯ୍ୟନ୍ତ ସମସ୍ତ କଥା କେବଳ ଅଶ୍ଳୀଳ ଭାବରେ ପୂର୍ଣ୍ଣଥିଲା । (୧) ଅନ୍ତୁର ମଧ୍ୟ ଆହାରବିହାରାଦିରେ ନିଷ୍ଟନ୍ତ ଥିବାରୁ ଆମୋଦ ପ୍ରମୋଦର ସ୍ପୃହା ସମସ୍ତଙ୍କ ମନରେ ଜାଗରିତ ହୋଇଥିଲା । ଗୀତ ବାଦ୍ୟ ପ୍ରତି ସାଧାରଣଙ୍କର ମନ ମଧ୍ୟ ଧୀରେ ଧୀରେ ଆକୃଷ୍ଟ ହେଉଥିଲା । ଏହିପରି ବିଳାସ ବାସନା ବା କାମନା-

(୧) ବର୍ତ୍ତମାନେ ଏପ୍ରକାର ଉଦ୍ୟାନ ସାଧାରଣଙ୍କ ଦୃଷ୍ଟିରୁ ଲୋପ ପାଇଅଛି, ତଥାପି ସେ ସମ୍ଭାରକୁ ପୂର୍ବରୁ ଅନୁମେୟ ।

ବ୍ୟସନ ସତ୍ତ୍ୱେ ସେମାନଙ୍କଠାରେ ଦୁଃସାହସାଦ କ୍ରୋଧଜବ୍ୟସନର ଅଭାବ ନ ଥିଲା । ଯବନ ବକ୍ଷରେ ଯୁଦ୍ଧଲାଗି ସବୁର ଧମନୀରେ ଉଷ୍ଣ ଶୋଣିତ ଧାବମାନ ହେଉଥିଲା । (୨) ଗଜେଶ୍ୱର କପିଳେନ୍ଦ୍ର ରାଜ୍ୟପାଇ କେବଳ ଯବନ ଯୁଦ୍ଧ ପ୍ରତୀକ୍ଷାରେ ଦାକ୍ଷିଣାତ୍ୟରେ ଅବସ୍ଥାନ କରୁଥିଲେ (୩) ଏବ ବାହାମଣୀ ରାଜ୍ୟରୁ ସମସ୍ତ ମୁସଲମାନ ଅଧିକାର ଛାଡ଼ି ନେବା ପାଇଁ ତୈଲଙ୍ଗପତିଙ୍କ ସହିତ ମିଳି ଘୋର ଯୁଦ୍ଧ କରିଥିଲେ । ପ୍ରଥମ ଯୁଦ୍ଧରେ ହଠାତ୍ ଶତ୍ରୁସେନାର ଆକ୍ରମଣରେ ପୃଷ୍ଠଭଙ୍ଗଦେଇ ପାଞ୍ଚ ଲକ୍ଷ ମୁଦ୍ରାଦ୍ୱାରା ସନ୍ଧିକ୍ରୟ କରିଥିଲେ (୪) ସତ୍ୟ; କିନ୍ତୁ ପଶ୍ଚାତ୍ ଉତ୍ତେଜିତ ସୈନ୍ୟମାନଙ୍କ ସେହି ଶତ୍ରୁମାନଙ୍କର ଦୁର୍ଦ୍ଦଶା ବିଧାନ କରିଥିଲେ (୫) ସେହି ସମୟରେ ଘନ ଘନ ଯୁଦ୍ଧ ଓ ଜୟବାର୍ତ୍ତା ପାଇ ପ୍ରଜାସାଧାରଣ ମହାଭାରତୀୟ ଯୁଦ୍ଧ କାହାଣୀକୁ ପ୍ରତ୍ୟକ୍ଷ ଅନୁଭବକୁ ଆଣୁଥିଲେ । ଘରେ ଘରେ ଯୁଦ୍ଧ ଲାଗି ମହାଭାରତ ଧନୁର୍ବିଦର ବ୍ୟବହାର ଶିକ୍ଷା କରି ନିକଟସ୍ଥ ଜଙ୍ଗଲରେ ବାଘ ଗଣ୍ଡା ଆଦି ବଧ କରୁଥିଲେ । ଏହା ବ୍ୟତୀତ ପଲ୍ଲୀ ଗ୍ରାମରେ ନାନା ପ୍ରକାର

---

(୨) କପିଳେନ୍ଦ୍ର ଦେବଙ୍କ ରାଜତ୍ୱସମୟରେ ଯେଉଁ ମୁସଲମାନ ଆକ୍ରମଣ ଓ ଯୁଦ୍ଧହୋଇ ଅଛି, ତତ୍ପୂର୍ବବର୍ତ୍ତୀ ବା ତତ୍ପରବର୍ତ୍ତୀ କୌଣସି ରାଜାଙ୍କ ସମୟରେ ସେତେ ହୋଇ ନାହିଁ ।

(୩) ସେ ସମୟରେ ରାଜମହେନ୍ଦ୍ରୀ ତାହାଙ୍କର ରାଜଧାନୀ ଥିଲା । ଏହାକୁ କବି ଅନେକସ୍ଥଳରେ ମହେନ୍ଦ୍ର ଦେଶ ବୋଲି ବର୍ଣ୍ଣନ କରିଅଛନ୍ତି ଏବଂ ରାଜାଙ୍କୁ ଅତିପ୍ରତାପୀ ଓ ଐଶ୍ୱର୍ଯ୍ୟଶାଳୀ ବୋଲି ବର୍ଣ୍ଣନ କରିଅଛନ୍ତି ।

(୪) ସନ୍ଧି ପତ୍ରରେ ଲିଖିତ ରାଜ୍ୟମାନଙ୍କ ଉପଢୌକନ ସ୍ୱରୂପ ଲକ୍ଷ ଲକ୍ଷ ମୁଦ୍ରା ଓ ରାଜସ୍ୱ ଦେବ ଏହି ଯୁଦ୍ଧ ଅବଲମ୍ବନରେ ଲିଖିତ ହୋଇ ପାରେ ବୋଧ ହୁଏ ।

(୫) ଏହି ପୁସ୍ତକର ତନଙ୍କ ଲକ୍ଷ୍ୟକରି ସମ୍ଭବତଃ ଦ୍ରୋଣପର୍ବ ପ୍ରାରମ୍ଭରେ ଯୁଦ୍ଧ ବର୍ଣ୍ଣନାରେ ମ୍ଲେଚ୍ଛ ପତିର ଯୁଦ୍ଧ କଥା ବର୍ଣ୍ଣିତ ଅଛି । ମ୍ଲେଚ୍ଛରାଜାର ଅପୂର୍ବ ରଣକୌଶଳ ବର୍ଣ୍ଣିତ ହୋଇ ଥିବାରୁ ବୋଧ ହୁଏ ମୁସଲମାନମାନେ ହିନ୍ଦୁଙ୍କୁ ପରାସ୍ତ କରି ଦେଇ ଥିଲେ ଏବ ବହୁ ମୁଦ୍ରା ନେଇ ଦେଶରାଜଙ୍କ ସହିତରେ ସନ୍ଧିତ ହୋଇଥିଲେ ।

ମଲ୍ଲଯୁଦ୍ଧ ମଧ୍ୟ ଅଭ୍ୟାସ କରି ଶରୀରର ବଳବୃଦ୍ଧି ସାଧନ କରୁଥିଲେ । * ସୁତରାଂ କେବଳ ସୈନିକ ବର୍ଗର କାର୍ଯ୍ୟକଥା ପର ସାଧାରଣଙ୍କର ଆଲୋଚନାର ପ୍ରୟୋଜନ ହୋଇଥିଲା । ସୈନିକ ସମ୍ପ୍ରଦାୟ ଛଡ଼ା ଯେଉଁମାନେ ନିଷ୍କର ବୃତ୍ତି ଭୋଗ କରୁଥିଲେ, ସେମାନେ ନ୍ୟାୟତଃ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଥିଲେ । ଅନ୍ୟମାନେ ମଧ୍ୟ ମୃଗୟା ବିନୋଦ ଓ ହିଂସ୍ର ଜନ୍ତୁର ଆକ୍ରମଣରୁ ଆତ୍ମରକ୍ଷା କରିବା ନିମନ୍ତେ ସ୍ୱଭାବତଃ ହୃଦୟ ମଧ୍ୟ ବୀରରସାବେଶରେ ଉଚ୍ଛୃଙ୍ଖଳ ହୋଇ ଉଠିଲା । ଏପରି ଅବସ୍ଥାରେ ମହାଭାରତ ଯୁଦ୍ଧ ଯେ ସମସ୍ତଙ୍କ ଆଖି ଆଗରେ ନାଚୁଥିବ, ସେଥିରେ ଆଉ ସନ୍ଦେହ କଣ ? ବୋଧ ହୁଏ ପ୍ରତ୍ୟେକ ନିତ୍ୟ ଘଟିତ ବିବାଦ ବିସମ୍ବାଦରେ ମହାଭାରତରେ ଉଦାହରଣ ଅବତାରଣା କରି ମୀମାଂସା କରୁଥିଲେ । ସମ୍ଭବତଃ ବୃଦ୍ଧ ବୃଦ୍ଧା ସମସ୍ତେ ମହାଭାରତର ଗୋଟିଏ କଥାକୁ [illegible] କରି ସନ୍ତାନମାନଙ୍କର 'ପରିତୃପ୍ତି' ନିମିତ୍ତ କାହାଣୀ ଭାଷାରେ ପ୍ରକାଶ କରୁଥିଲେ ।

ରଚନା ।

ଶୂଦ୍ରଜନ୍ମା କବି ଏହିପରି ପରିସ୍ଥିତ ମହାଭାରତର ପ୍ରୟୋଜନୀୟତା ଉତ୍ତମରୂପେ ଉପଲବ୍ଧି କରି ଏବଂ ଗୃହଅଙ୍ଗନରେ [illegible] ମାଲ୍ୟମଣ୍ଡନ ପାଇ ତଦାନୀନ୍ତନ ଜନସାଧାରଣଙ୍କର [illegible] ଗୃହେ ମହାଭାରତ ମହାପ୍ରାସାଦ ନିର୍ମାଣରେ ମନ ବଳାଇଲେ । କିମ୍ବଦନ୍ତୀର ସତ୍ୟ ଉପରେ ନିର୍ଭର କଲେ ଜଣାଯାଏ ଯେ, କବି ଶୈଶବରେ ବୃଦ୍ଧ ପିତାଙ୍କ ମୁଖରୁ ମହାଭାରତ କଥା ଶୁଣିଥିଲେ । ଏହା ତାହାଙ୍କ ସ୍ୱଭାବକ ପୁରାଣାନୁରାଗିତାର ବୀଜ । ଅନନ୍ତର କ୍ରମଶଃ ବୟୋବୃଦ୍ଧି ଅନୁସାରେ ଏହି କୌତୂହଳର ଆଧିକ୍ୟ ଯୋଗୁଁ ସେ କାଳର ଶିକ୍ଷାପଦ୍ଧତି ଅନୁଯାୟୀ ଅଭିଧାନ

* ବିରାଟପର୍ବ ମଲ୍ଲଯୁଦ୍ଧ ବର୍ଣ୍ଣନା ସେଠାରୁ ଏହା ଅନୁମେୟ ।

ଶଂରା ବ୍ୟାକରଣ ସୂତ୍ର ମୁଖସ୍ଥ ନ କରି (୧) କେବଳ ପୁରାଣମାନଙ୍କ ପ୍ରତି ଧ୍ୟାନ ଦେଲେ ସେ ବିଷ୍ଣୁପୁରାଣ ଓ ମହାଭାରତର କଥାମାନ ବ୍ରାହ୍ମଣ ପଣ୍ଡିତ ଏବଂ ପୁରୋହିତଙ୍କଠାରୁ (୨) ଆଗ୍ରହ ସହକାରେ ଶୁଣି ସେହି ଗୁଡ଼ିକ ମାନସକୋଷରେ ସଞ୍ଚିତ ସଂସ୍ପୃ କରିଥିଲେ । ବିଶେଷତଃ ଶାରଳା ମନ୍ଦିରରେ ତାହାଙ୍କର ନାନା ପୁରାଣ ଶୁଣିବାର ସୁବିଧା ହୋଇଥିଲା । ଶାରଳା ବଡ଼ ପୁରାଣବତ୍ସଳା ବୋଲି କବିଙ୍କର ଏହି ଉକ୍ତିରୁ ପ୍ରକାଶ ପାଉଅଛି । 'ସର୍ବମଙ୍ଗଳାରୂପୀ ମାତା ଯେ ମତ୍ତ ହୋଇ—ଗ୍ରନ୍ଥାର୍ଥ ଶୁଣନ୍ତି ସେ ରହସ୍ୟ କୁତୂହଳ' ଅଃ ପଃ । କବି ପୁରାଣମାନଙ୍କ ମଧ୍ୟରୁ ବିଶେଷରେ ବିଷ୍ଣୁପୁରାଣ ଓ ଶିବପୁରାଣର କଥା ଅଙ୍ଗୀକୃତ କରିଥିଲେ, ତେଣୁ ଏହି ପୁରାଣଦ୍ୱୟରୁ ଉପଥବର୍ତ୍ତୀ କଥାଂଶ ମାନ ସ୍ୱୀୟ ମହାଭାରତର ସ୍ଥଳବିଶେଷରେ ଯୋଗ କରିଅଛନ୍ତି । ପ୍ରତ୍ୟହ ନିଶାମୁଖରେ କବି ଦେବୀଙ୍କ ମନ୍ଦିରରେ ମହାଭାରତ ଶୁଣି, ରାତିରେ ଯାହା ବସି ରଚନା କରୁଥାନ୍ତି, ତାହା ତହିଁ ଦିନ ଉଷା ଦେବୀଙ୍କ ନିକଟରେ ପାଠ କରନ୍ତି । କବିଙ୍କର ଉକ୍ତି ଛଡ଼ା ଏପରି ଅନୁମାନ କରିବାର ଆଉ ଗୋଟିଏ କାରଣ ଏହି ଯେ, ସେ ପ୍ରତ୍ୟେକ ପର୍ବର ବିଶେଷ ଘଟନା ବା ଯୁଦ୍ଧାଦିବର୍ଣ୍ଣନାର ଶେଷରେ ପ୍ରାୟ ସର୍ବତ୍ର ଏକାପରି ଉକ୍ତି (ଭଣିତା) ପ୍ରକାଶ କରିଅଛନ୍ତି, ସେଥିରୁ ସ୍ପଷ୍ଟ ଜଣା ଯାଏ—ଉକ୍ତ ଅଂଶମାନ ଏକ ଉଚ୍ଛ୍ୱାସର ବା ଏକଦିନର ଲେଖା । ଦେବୀ ମନ୍ଦିରରେ କବି ନିଜ ମହାଭାରତ ପାଠ କଲା-ବେଳେ ବିଜ୍ଞ ବ୍ରାହ୍ମଣ ପଣ୍ଡିତ ଏବଂ ପୁରୋହିତଙ୍କୁ ବହୁତ ଭୟ କରୁ-

(୧) ନ ପଢ଼ିଲି ନ ଶୋଧିଲି ଗଡ଼ ନଳୁ ପୂର୍ବେ-ପୁରାଣ ଅଭ୍ୟାସ କଲି ଶାରଳା ପ୍ରସନ୍ନେ । ଆଃ ପ; ପୃ ୧୩ ।
ଏଠାରେ ନଶୋଧିଲି ଅଭିଧାନ ଓ ବ୍ୟାକରଣ ପ୍ରତି ଲକ୍ଷ୍ୟ ।

(୨) ବାମଦେବ ପୁରୋହିତ ବୋଲେ ଶାସ୍ତ୍ର-ଯୋଗେ; ମୁହିଁ ତାହା ବଖାଣିଲି ସର୍ବ ଶୁଭ ଯୋଗେ । ମ; ପ;

ଥିଲେ ଏବଂ ସେଥିପାଇଁ ସେ ପ୍ରତ୍ୟହ ଭୟ ଓ ବିନୟ ପ୍ରଦର୍ଶନପୂର୍ବକ ଉକ୍ତମାନଙ୍କର ବଶଂବଦ ହୋଇଥିଲେ । ନ,,ପଢ଼ିଲି ଅକ୍ଷର ମୁଁ ନୁହେ ଶାସ୍ତ୍ରବାଦୀ, ପଣ୍ଡିତଙ୍କ ସଙ୍ଗେ ବସି ନ କଲି ସମାଧି । କୁସ୍ତାନେ ବସିଲି ନ ବସିଲି ବିପ୍ରଗୋଷ୍ଠୀ—ଶିଶୁବୁଦ୍ଧି ମୋହର ବଇସ ଅଳପଟି, ମଃ ପଃ । କଥିତ ଅଛି କବି ମହାଭାରତ ଲେଖିସାରି ଲିଖିତ ତାଳପତ୍ରମାନ ଆଗେ ପାର୍ଶ୍ୱ ବାହୁଡ଼ା ବୃଦ୍ଧ ନଦୀ (୧) ଗର୍ଭରେ ପକାଇ ଦେଲେ । ସେଥି ମଧ୍ୟରୁ ଯାହା ଭାସି ଉଠିଲା ସେ ଗୁଡ଼ିକ ଅଗ୍ରପଶ୍ଚାତ୍ କ୍ରମ ଅନୁସାରେ ସଜ୍ଜିତ କରି ପୋଥି ବାନ୍ଧିଲେ; ଏହିପରି ଗୋଟିଏ (୨) କୌତୁକ କାହାଣୀ ଆଦି କବିମାନଙ୍କ ସମ୍ବନ୍ଧରେ ଯେଉଁ ଶୁଣା ଯାଇଥାଏ; ତାହା କବିଙ୍କର ଅଦ୍ଭୁତତାର ନିଦର୍ଶନ । ମହାରାଷ୍ଟ୍ରର ଆଦିକବି ଉକ୍ତ ଭକ୍ତ ତୁକାରାମଙ୍କ ସମ୍ବନ୍ଧରେ କିମ୍ବଦନ୍ତୀଟି ପ୍ରଚଳିତ ଅଛି, ଏହାକୁ ତାହାର ନକଲ କହିଲେ ଚଳେ [illegible]ସ ଯାହା ହେଉ ଏହି କିମ୍ବଦନ୍ତୀରେ କିଛି ସତ୍ୟ ଥିଲା ପରି ଜଣା ଯାଉ ନାହିଁ । ସମ୍ଭବତଃ ସଂସ୍କୃତାନୁରାଗୀସମାଜ ମଧ୍ୟରେ

---

(୧) ପ୍ରଚଳିତ ନାମ 'ବୁଢ଼ୀନଈ' ଶ୍ରୀଯୁକ୍ତ କିଂବଦନ୍ତୀରୁ ପ୍ରକାଶ ପାଉଅଛି ଯେ, ଏହି ନଦୀରେ ପୂର୍ବେ ବାଣିଜ୍ୟ ନୌକା ଯାତାୟାତ କରୁଥିଲା । ଏକଦା କୌଣସି ସୌଦାଗରର ଏଥିରେ ବୁଡ଼ିଯାଇ ଥିବାରୁ ଏହାର ନାମ ବୁଡ଼ି ନଈ ହୋଇଅଛି ; କିନ୍ତୁ କବି ଗ୍ରନ୍ଥରେ ଏହାର ନାମ ବୃଦ୍ଧନଦୀ ବା ବୃଦ୍ଧମାତା ବୋଲି ପ୍ରକାଶ କରି ଯାଇଛନ୍ତି ।

(୨) କଥିତ ଅଛି, ଭକ୍ତ ତୁକାରାମ ଇଷ୍ଟଦେବ ବିଠୋବା ମନ୍ଦିରରେ ଭଜନ ରଚନା କରୁଥିବା ସମୟରେ ତତ୍ରତ୍ୟ ବ୍ରାହ୍ମଣମାନେ ଶୂଦ୍ରର କବିତ୍ୱାଧିକାର ଦେଖି ତାଙ୍କ ପ୍ରତି ବଡ଼ ଈର୍ଷା ପ୍ରକାଶ କଲେ ଏବଂ ସେହି ଅନଧିକାର ଚର୍ଚ୍ଚାରୁ ବିରତ ହେବାକୁ ବାରମ୍ବାର ତିରସ୍କାର କଲେ । କବି ସେମାନଙ୍କ ଉତ୍ପୀଡ଼ନରେ ଲିଖିତାଂଶ ଦୁଇଖଣ୍ଡି ପଥର ପଟା ମଧ୍ୟରେ ରଖି ତାହାକୁ ଗୋଟିଏ ଲୁଗାରେ ଗୁଡ଼ାଇ ପାର୍ଶ୍ୱ ବାହୁଡ଼ା ନଦୀରେ ବୁଡ଼ାଇ ଦେଇ ଆସିଲେ ଏବଂ ଇଷ୍ଟଦେବଙ୍କର ପୂର୍ବବତ୍ ଉପାସନା କଲେ । ତହିଁର ତେର କିଂବା ଚୌଦ ଦିନ ଉପରେ ତାହା ଜଳ ଉପରକୁ ଭାସି ଉଠିଲା । ଠାକୁରଙ୍କୃତ ବୋମ୍ବାଇ-ଚିତ୍ର ।

କବିଙ୍କର ପ୍ରତିଷ୍ଠାଲୋଭବଶତଃ ତଦୀୟ ବଂଶଧରମାନେ ଏପରି ଗୋଟିଏ କଳ୍ପନାର ସୁଦର୍ଶନଚକ୍ର ଦ୍ୱାରା ପୂର୍ବପୁରୁଷଙ୍କ ରକ୍ଷା କରି-ଅଛନ୍ତି । ଏପରି କଳ୍ପନାର ମୂଳ ଗୋଟି ଅଭିପ୍ରାୟ ଥିଲା ପରି ବୋଧ ହୁଏ । ଗୋଟିଏ ଏହି, କବି ମହାଭାରତର କଥା ମୌଳିକ କ୍ରମାନୁସାରେ ଲେଖି ନାହାନ୍ତି । ଆହୁରି ମଧ୍ୟ ସେ ଗ୍ରନ୍ଥ ନ ପଢ଼ି ବହୁଳ କଥାର କ୍ରମ ରକ୍ଷା କରିବା ଅସମ୍ଭବ । ଅନ୍ୟଟି ଏହି ଯେ, କବି ମୂଳ ମହାଭାରତର ଅନେକ ପ୍ରସଙ୍ଗ ଛାଡ଼ି ଯାଇଅଛନ୍ତି । ତାହାଙ୍କର ଯାହା ମନେ ଥିଲା କେବଳ ସେହି ସବୁ କଥା ସେ ଠିକ୍ ଠିକ୍ ବର୍ଣ୍ଣନା କରିଅଛନ୍ତି । "କହିଲି ମହାଭାରତ ଠିକ ଠିକ ଭାବେ" । କବିଙ୍କର ଏହି ଦୁଇ ପ୍ରମାଦ ବା ତ୍ରୁଟିର ମାର୍ଜନା ଲାଗି କିମ୍ବଦନ୍ତୀଟି ଗଠିତ ହୋଇଥିଲେହେଁ ତଦ୍ଦ୍ୱାରା କବିଙ୍କର ମର୍ଯ୍ୟାଦାବୃଦ୍ଧି ହୋଇ ନାହିଁ ; କେବଳ ସତ୍ୟର ଅପଲାପ ହେଲା । ଯଦି [illegible] ଏହ ସତ୍ୟର ଅପଲାପ ବୋଲି ସ୍ୱୀକାର ନ କରନ୍ତି, ତେବେ [illegible] ତାହାଙ୍କ ଆପତ୍ତିର ଖଣ୍ଡନରେ ଆହୁରି ଦୃଢ଼ ପ୍ରମାଣ ଏଠି ଦେଇ ପାରୁଁ ଯେ, କବି ତ ବସି ସମଗ୍ର ମହାଭାରତ ସ୍ୱଗ୍ରାମରେ ଥାଇ ଲେଖି ନ ଥିଲେ ଯେ, ବୃଦ୍ଧ ନଦୀରେ ତାହା ଭସାଇ ଦେଲେ ? ତାଙ୍କ ଗ୍ରନ୍ଥ ପାଠରୁ ସ୍ପଷ୍ଟ ଜଣା ଯାଏ ଯେ ପୁରୀ ଭୁବନେଶ୍ୱର କୋଣାର୍କ ପ୍ରଭୃତି ତୀର୍ଥ ସ୍ଥାନମାନ ଭ୍ରମଣ କରି ସେହି ସବୁଠାରେ ରଚନା କରୁଥିଲେ । ପୁରୀକୁ ସେ ଦୁଇ ତିନ ଥର ଯାଇ ଥିବାର ଅନୁମାନ ହୁଏ । ବନପର୍ବ ଦ୍ରୋଣପ୍ରବନ୍ଧ ପର୍ବରେ ନୀଳାଚଳର ଯେପରି ଯେପରି ସବିସ୍ତାର ବର୍ଣ୍ଣନା ଏବଂ କବିଙ୍କର ପ୍ରତ୍ୟକ୍ଷ ଜଗନ୍ନାଥ ଦର୍ଶନର ଚିହ୍ନ ମିଳେ, ତାହା ଅନ୍ୟ କୌଣସି ପୂର୍ବୋକ୍ତ ପର୍ବରେ ନାହିଁ । ଏଥିରୁ ସ୍ପଷ୍ଟ ଜଣା ଯାଉଅଛି କବି ସେଠା କଳ୍ପବଟ ମୂଳେ ବସି ମହାଭାରତ ରଚନା କରୁଥିଲେ । ନୀଳକନ୍ଦଳପସ୍ୱ ଏ ଯା ବଦନ ଗୋଟି । ନୀଳ କଳ୍ପବଟ ତଳେ ପାଇଲି ତା ଭେଟି । ଦ୍ରୋଃ ପଃ

ପୃ ୧୭ । ସେଠାରେ ମୁକ୍ତି ମଣ୍ଡପରେ ବ୍ରାହ୍ମଣ ପଣ୍ଡିତମାନଙ୍କ ସହିତ ତାହାଙ୍କର ଆଲାପ ହେଲା । 'ପଣ୍ଡିତ ଜନମାନଙ୍କୁ ମୁଁ ମାଗଇଁ ନମସ୍ତେ—କର ଅଜ୍ଞା ଦେଇ ମୋର ନାବଯୂଣ ଲଙ୍ଘେ । ମଃ ପଃ । ସେମାନଙ୍କ ସଂସର୍ଗରେ ମଧ୍ୟ ଦାସଙ୍କ ଜୀବନର ଯଥେଷ୍ଟ ପରିବର୍ତ୍ତନ ଘଟି ଥିଲା । ସମ୍ଭବତଃ ତତ୍‌ତ୍ୟ ପଣ୍ଡିତମାନଙ୍କ ମୁଖରୁ ମହାଭାରତ କଥା ଶୁଣି ଓ ନୂତନ ଭାବରେ ଶୁଣି କୃତାର୍ଥ ହୋଇଥିଲେ । ତେଣୁ ଶ୍ରୀକ୍ଷେତ୍ର ଲକ୍ଷିତ ବର୍ତ୍ତମାନ ଭାଷା ଅନ୍ୟାନ୍ୟର ବର୍ଣ୍ଣନାରେ ଅପେକ୍ଷାକୃତ ଉତ୍କୃଷ୍ଟ ବୋଲି ବୋଧ ହୁଏ । ସେଥିରେ ଅଶ୍ଳୀଳତା ଓ ଗ୍ରାମ୍ୟଭାବର ମାତ୍ରା ଅତିଅଳ୍ପ ଲକ୍ଷିତ ହୁଏ ।

ଅନନ୍ତର କବି ଯଗେଶ୍ୱର ଲିଙ୍ଗଙ୍କ ମନ୍ଦିରରେ କିଛିଦିନ ଅବସ୍ଥାନ କରି ପ୍ରସିଦ୍ଧ କୋଣାର୍କତୀର୍ଥର ଅଭିମୁଖୀନ ହେଲେ । କୋଣାର୍କର ବିଶାଳଦେବାଳୟ ତାହାଙ୍କର ଅତିପ୍ରିୟ ଥିଲା । (୧) ସେହି ପୁଣ୍ୟ-ସ୍ଥାନଲାଭ ଏବଂ ମହୋଦଧି ଦର୍ଶନରେ ଅବଶ୍ୟ ତାହାଙ୍କର ଭବାନ୍ତର ଘଟିତ ହୋଇଥିଲା ଏବଂ ସେହିଠାରେ ସେ ତପସ୍ୟାଚରଣ କରି ମହାଭାରତର ଅବଶିଷ୍ଟାଂଶ ପୂର୍ଣ୍ଣକଲେ । ଅନ୍ତର ମଧ୍ୟ ସେ ଯେତେ କୋଣାର୍କର ପ୍ରଶଂସା ଏବଂ ସର୍ବଶ୍ରେଷ୍ଠତା ବର୍ଣ୍ଣନ କରି ଅଛନ୍ତି, ସେଥିରୁ ବୋଧହୁଏ ଯେପରି କି ସେହିଠାରେ ମୁକ୍ତିର ପନ୍ଥା ଉଦ୍ଘାଟିତ ହୋଇ-ଥିଲା । ସମ୍ଭବତଃ ଏହିଠାରେ ସେ ଯୋଗସାଧନ ଆରମ୍ଭ କରିଥିଲେ । ସ୍ୱର୍ଗାରୋହଣପର୍ବର କେତେକ ପଂକ୍ତି ନିରୀକ୍ଷଣ କଲେ ତାଙ୍କର ଯୋଗାଭ୍ୟାସ ପ୍ରକାର ଅନୁମାନ ହୁଏ । (୧) ସେଠାରେ ମଧ୍ୟ ଗୋଟିଏ

(୧) ବାମକୁ ବନାଣ ଦକ୍ଷିଣାରକୁ ନେବେଶ୍ୱା । ଚନ୍ଦ୍ରେ ଲମ୍ବ ରଷ ଟଣ୍ଟାଣ ବାହୁଲୁକ । ...ଥଲା ଚିତିଲା" ବିଦ୍ରୂମୂନା ଘନନାଡୀ । (ପିଙ୍ଗଳା ସୁଷୁମ୍ନା) ନବେଧ ପବନକୁ ଏକଦ୍ୱାରେ ଷନ୍ଦ୍ର । ପଶ୍ଚିମ ଲେଉଟାଇ ଛଦ ସେତର ମୁଦ୍ରା, ତେବେ ତାରକୁ ଯେ ହୋଇବ ମହା ନିଦ୍ରା । ଏପରି ହୋଇଲେ ଦେବେ ନସରିବ ଭେ । ତେବନବେଦ୍ଧନ ଶରୀରକୁ ପୂରେ ଭଷ । ଏହାର ଶବ୍ଦ ସେବେ ହୁଅଇ ...ଷ୍ଟା, ତେବେ ନଷ୍ଟକ୍ରୋଡ ଏ ଶରୀର ହୁଏ ରକ୍ଷା—ମ: ପ: ପୃ ୪ ।

କଲ୍ପବଟ ତାହାଙ୍କର ଅଧିଷ୍ଠିତସ୍ଥାନ । "ଚନ୍ଦ୍ରଭାଗା କୋଣାର୍କ ମହୋଦଧିତଟେ-ଭୂବଇଁ ସର୍ବଦା ମୁହିଁ ସେ ବଟ ନିକଟେ" (୨) ଶାଃ ପୃଃ ୨୯ପୃ । ସମସ୍ତ ମହାଭାରତ ପୂର୍ଣ୍ଣ ହେଲା ଉତ୍ତାରେ ସେ ପୁଣି ପୁରୀ ପ୍ରତ୍ୟାଗମନ କରି ସୁପ୍ରସିଦ୍ଧ ମୁକ୍ତିମଣ୍ଡପ ସଭାର ପଣ୍ଡିତମଣ୍ଡଳୀଙ୍କ ସମ୍ମୁଖରେ ସ୍ୱୀୟ ନୂତନ ପ୍ରାକୃତ ମହାଭାରତ ଉପସ୍ଥାପିତ କଲେ । କଥିତ ଅଛି, ପଣ୍ଡିତମାନେ ଶୂଦ୍ର କବିକୃତ ଏହି ମହାଭାରତ ସ୍ୱଭାବଗତ ଘୃଣା ଚକ୍ଷୁରେ ଦେଖି ଦେଖି ଗ୍ରନ୍ଥ ମଧ୍ୟରେ ନିତାନ୍ତ ହେଲେ, "ବିଶେଷତଃ ଗୋଟିଏ ସ୍ଥଳରେ" ହାତିବାର ଯୁଣିତାର ଘଣ୍ଟବାର ଯୁଣି"ଏହି ଅସମ୍ଭବ କଥାଟି ଶୁଣି ଉକ୍ତ ଗ୍ରନ୍ଥ ପ୍ରତି ଅନାସ୍ଥା ପ୍ରଦର୍ଶନପୂର୍ବକ ଫିଙ୍ଗି ଦେଲେ ଏବଂ ଯଥେଷ୍ଟ ତିରସ୍କାର ଓ ଉପହାସ ସହ ବିଦାୟ ଦେଲେ । ଉକ୍ତ କବି ସେଥିରେ ନିତାନ୍ତ ମର୍ମାହତ ହୋଇ ସମସ୍ତ ରାତ୍ରି ଜାଗରଣପୂର୍ବକ ଭକ୍ତପ୍ରିୟ ଜଗନ୍ନାଥଙ୍କର ଆରାଧନା କଲେ ଏବଂ ତାହାଙ୍କ ପ୍ରସାଦରୁ ତହିଁ ଆରଦିନ ଉକ୍ତ ଅଂଶର ସତ୍ୟତା ପ୍ରମାଣ କରାଇ ପଣ୍ଡିତମାନଙ୍କଦ୍ୱାରା ସ୍ୱମହାଭାରତକୁ ସଙ୍ଗତ ବୋଲି ଅନୁମୋଦିତ କରାଇଲେ । (୩) ତାଙ୍କର ଭକ୍ତିର ପରାକାଷ୍ଠା ପ୍ରଦର୍ଶନରେ ପଣ୍ଡିତମାନେ ଅତୀବ ସନ୍ତୁଷ୍ଟ ହୋଇ ତାହାଙ୍କୁ ଶୂଦ୍ରମୁନି ବୋଲି ଆଦର କଲେ । ବୋଧ ହୁଏ ଏହି ସମୟଠାରେ ତାହାଙ୍କର ଶୂଦ୍ରମୁନି ଆଖ୍ୟା ସର୍ବତ୍ର ପ୍ରଚଳିତ ହେବାକୁ ଲାଗିଲା । ସମ୍ଭବତଃ ଏହି ସମୟରେ ତଦାନୀନ୍ତନ ନରପତି କପିଳେନ୍ଦ୍ର ଦେବ ତାହାଙ୍କର

(୨) ପ୍ରତ୍ୟେକ ସ୍ଥଳରେ ବଟତଳର ଉଲ୍ଲେଖ ହାର ସେ ସନ୍ନ୍ୟାସବେଶରେ ବୁଲୁଥିବାର ଅନୁମାନ ହୁଏ ଏବଂ ବଟତଳେ ତାହାଙ୍କର ସେହି ମୁନିବେଶ ହଠାତ୍ ପାଠକର ମାନସ ପ୍ରତ୍ୟକ୍ଷ ହୁଏ ।

(୩) ହାତୀ ବାରପୁଣ ତାର ଘଣ୍ଟ ବାରପୁଣ ଏକଥାଟି କେବେ ଏପର୍ଯ୍ୟନ୍ତ କ୍ଷୁପର୍ଣ୍ଣ ଯସୂଅଛନ୍ତି । ଏହି କିଂବଦନ୍ତୀ ସଙ୍କେ ସତ୍ୟ ପ୍ରାପ୍ତ ବୋଧହୁଏ । କବି ହିଗତ ଅଙ୍କରେ ପଣ୍ଡିତମାନଙ୍କର ବିଶ୍ୱାସ ଜନ୍ମାଇଥିଲେ ତାହା ଉଦ୍ୟୋଗ ପର୍ବ ଅନୁସାର ନିମ୍ନଲିଖିତ କତିପୟ ପଂକ୍ତିରୁ ଅନୁମିତ ହେଉଅଛି ;—ହସ୍ତୀ ବାରପୁଣ

ପରିଚୟ ପାଇଥିଲେ ଏବଂ ତହିଁ ମଧ୍ୟ ରାଜଦର୍ଶନ ଲାଭ କରି ଉପକୃତ ହୋଇଥିଲେ । ଗୁଣଗ୍ରାହୀ ରାଜା ଏହି କବିଙ୍କୁ ଶାରଳାସେବକ ଥିବାର ଜାଣି ରାଜକୀୟ ଉପାଧି ସହିତ (୪) ଝଙ୍କଡ଼ ଆଦି କେତେ ଖଣ୍ଡି ଜନପଦ ନିଷ୍କର ବୃତ୍ତି ପ୍ରଦାନ କରିଥିଲେ । ଗଙ୍ଗବଂଶୀୟ ରାଜଗଣଙ୍କ ରାଜତ୍ୱ କାଳରେ ପୂର୍ବୋକ୍ତ ଓ ସେବକମାନେ ଯେତେ ନିଷ୍କର ବୃତ୍ତି ପ୍ରାପ୍ତ ହେଉଥିଲେ ଅନ୍ୟ କୌଣସି ରାଜାଙ୍କ ସମୟରେ ସେପରି ଘଟି ନାହିଁ ବୋଲି ଇତିହାସ ପ୍ରକାଶ କରୁଅଛି । କବି ରାଜପ୍ରସାଦ ଲାଭ କରି ସ୍ୱର୍ଗୋପମ ଜନ୍ମସ୍ଥାନ ପ୍ରତି ପୁଣି ଅଗ୍ରସର ହେଲେ । ପଥ ମଧ୍ୟରେ ଭୁବନେଶ୍ୱର ପ୍ରାଚୀକୂଳସ୍ଥ ତ୍ରିବେଣୀ ତୀର୍ଥ (୧) ନିଶ୍ଚିହର (ଫୁଲ ନଖରା) ପ୍ରଭୃତି ସ୍ଥାନ ଅତିକ୍ରମ କରି କଟକରେ

---

ଘଣ୍ଟ ବାଉପୁଣ, ଏମନ୍ତ ଶୁଣି ଯୁଧିଷ୍ଠି ଅନ୍ତପା ହୋଇଣ । ସହଦେବଙ୍କର ଶ୍ରୀମୁଖର ଥନାଇଲେ । ମୋ ଥବରେ ମିଥ୍ୟା ତୁ ଯେ କହିଲୁ ବୋଇଲେ । ସମର ଭୂମିରେ ଯେବେ ଥିବ ସେହି ହସ୍ତୀ ? କେଉଁଠାରେ ରହିବେ ସେ ସଘନ ପଦାତ । ଅଛି ହସ୍ତୀ କଣ୍ଠେ ପୁଣି ଘଣ୍ଟା ବାଉପୁଣ, ଏକଥା ମାନ ମୋତେ ଲାଗଇ ଅଘଟଣ । ଯୁଧିଷ୍ଠିଙ୍କ ବଚନେ କହନ୍ତି ସହଦେବ ଅସମ୍ଭବ ମଣିଲ ଯେ ହସ୍ତୀର ପ୍ରସ୍ତାବ । ଏକମନେ ଶୁଣିମା ଏବେ ହେ ଦେବରାଏ । ମାନବରେ ଦେବପୁଣ ସାତପୁଣ ନୃଏ । ଦେବତାଙ୍କ ବୃକ୍ଷପୁଣ ଅଟଇ ପୁଣ ସାତେ । ଏକମନେ ବୃକ୍ଷ ଏହ ହୋଇଥିବ ବେତେ । ମାନବ ଯୁଣରେ ଘଣ୍ଟା ଅଛି ହସ୍ତି ଗଳା ଦେବତା ଯୁଣରେ ପୁଣ ହସ୍ତୀ ଯେ ହୋଇଲା । ବୃକ୍ଷ ଯୁଣେ ହୋଇଛି ଯେ ସମରଭୂମି, ସହଦେବ ବଚନେ ସନ୍ତୋଷ ଦେବ ସ୍ୱାମୀ । ଉ; ପ; ପୃ ୧୦୭ ।

ମହାଭାରତ ପାଠକମାନେ ଏହି ଗ୍ରନ୍ଥ ବର୍ଣ୍ଣିତ କାଳ ଓ ମାର୍ଗିତ ପରିମାଣ ଏବଂ ଶ୍ଳୋକ ସଂଖ୍ୟା ସ୍ଥଳରେ ଏହି ଯୁକ୍ତିକ ପଦ ମନେ ରଖିବେ, ତାହାହେଲେ ଅବା କଥଞ୍ଚିତ ଧୈର୍ଯ୍ୟସହକାରେ ସମସ୍ତ ଗ୍ରନ୍ଥ ପଢିପାରିବେ ।

(୪) କଥିତ ଅଛି ତାଙ୍କର ପୂର୍ବ ଉପାଧି ସାଉଁ ଥିଲା, ରାଜା ପରିଡ଼ା ଉପାଧି ପ୍ରଦାନ କରିଥିଲେ ।

(୧) ସେହିଠାରୁ ଚଢଇଲେ ଅଗ୍ନିକୋଣ ମୂର୍ତ୍ତି-ପ୍ରାଚୀ ନଦୀ କୂଳେ ପାଇ ପ୍ରବେଶ ହୁଅନ୍ତି । ମ; ପ; ପୃ ୧୨ ।

(୨) ଆସି ଉପସ୍ଥିତ ହେଲେ । ସେଠାରେ ପ୍ରଥମେ ଚଣ୍ଡୀ ଦର୍ଶନ ପୂର୍ବକ (୩) ତୁଳସୀପୁରଠାରେ କିଛିକାଳ ଅବସ୍ଥାନ କରି ସ୍ୱଗୃହାଭି-ମୁଖରେ ପ୍ରସ୍ଥାନ କଲେ । ତେତେବେଳେ କଟକବାସୀମାନଙ୍କର ଅବସ୍ଥା ସାତିଶୟ ଅଧଃପତିତ ଥିଲା ଜଣାନାହିଁ, କାରଣ କବି କଟକ ପ୍ରତି ବଡ଼ ତୀବ୍ର କଟାକ୍ଷପାତ କରିଅଛନ୍ତି । ଆଜି କାଲି ଯେପରି କଥାରେ କହନ୍ତି "କଟକରେ ଜାଗା ନାହିଁ କି ପୁରୀରେ ସ୍ଥାନ ନାହିଁ" ବହୁ ଶତବର୍ଷ ପୂର୍ବରୁ କବି ସେହି ସତ୍ୟ ପ୍ରକାଶ କରିଅଛନ୍ତି— 'ଅଘୋଷ ଏ ଭୂମି ଜାଣି କେହି ନ ପଶିଲେ, ମାନ୍ୟ ଗୌରବ ନାହିଁ ସବୁ ଏକାକାର । ଦ୍ୱିଜ ଚଣ୍ଡାଳ ଯେ ଏକ ନୁହଇ ଅନ୍ତର । ଭୋଜନ କରିଲେ ଦ୍ୱିଜ ନୁହଇ ଅଇଁଠା । ମଦ୍ୟ ମାଂସ ଏକଥରେ କରନ୍ତି ଯେ ଲଟ । ଅନୁକ୍ଷଣେ ଏଠାବାସୀ ରମଣ କରନ୍ତି କେଉଁଥିରେ ସେମାନଙ୍କ ନ ଥାଇସେ ଭ୍ରାନ୍ତି । ଗୋ ବ୍ରାହ୍ମଣ ମାରନ୍ତି ସେ ନଜାଣନ୍ତି ହତ୍ୟା । ନଜାଣନ୍ତି ତହିଁ ଦେବ ହରି ହର କଥା ।"— ସ୍ୱ: ପ: ୧୯—

ବର୍ତ୍ତମାନେ ଏହି ପଂକ୍ତି କତିପୟର ଭାବ ପୂର୍ବୋକ୍ତ ପ୍ରବାଦ ଆକାର ଧାରଣ କରିଅଛି । ଶେଷ ପର୍ବର ଏହି ଅଂଶ ଯଦି ପ୍ରକ୍ଷିପ୍ତ ନ ହୋଇ ଥାଏ, ତାହା ହେଲେ ଏଥିରୁ ସ୍ପଷ୍ଟ ପ୍ରତିପାଦନ କରାଯାଇପାରେ ଯେ, କଟକ ତେତେ ବେଳେ ରାଜଧାନୀ ନଥିବାରୁ ଏବଂ ରାଜଧାନୀ ତହିଁର ବହୁ ଦୂରରେ ଅବସ୍ଥିତ ଥିବାରୁ ତତ୍ରତ୍ୟ ପ୍ରଜାଗଣଙ୍କ ମଧ୍ୟରେ ନ୍ୟାୟଧର୍ମର ବିଚାର ହେଉ ନ ଥିଲା ଲୋକେ ନାନା ଅତ୍ୟାଚାରର ପ୍ରଶ୍ରୟ ପାଉଥିଲେ ଏହା ମଧ୍ୟ ଅନୁମିତ ହେଉଅଛି; ତେତେବେଳେ ଯବନ ଅଧିକାରରନ୍ଧ୍ରପ-

(୨) ତୁଳସୀପୁର ନଗରେ ଯାଇ ପ୍ରବେଶିଲେ । ଦେଖିଲେ ସେ କୋଠସବୁ [illegible] ନଦୀ ତୀରେ । ସ୍ୱ; ପ; ପୃ ୧୮ [କାଠଯୋଡ଼ି ?] ।

କାଠଯୋଡ଼ି ନାମଟି ଅତି ଅଳ୍ପକାଳ ହେଲା ହୋଇଅଛି । ବୋଧହୁଏ ତାହାର ପୂର୍ବନାମ ଭବ୍ୟା ଥିବ ।

[୩ ଜମ୍ବୁ ଗୁମ୍ଫ ଶ୍ରୀଚଣ୍ଡୀ ମଣ୍ଡପ ମଣ୍ଡପମାଳ । ତପୋବନେ ଲକ୍ଷ କରି ନୟନ୍ତ୍ର । ସ୍ୱ; ପ; ପୃ ୧୮ ।

ଜନ୍ମ ହୋଇଥିଲା ତଦ୍ଭବତ ଧର୍ମକ୍ଷେତ୍ର ପୁରୀ ଓ ଭୁବନେଶ୍ୱର ଦେଖି ଆସି ଅଛନ୍ତି ଏ କଟକକୁ ଯେ ଅପବିତ୍ର ମଣିବେ, ସେଥିରେ ସନ୍ଦେହ କଣ ? କଟକ ନଗରରେ ଅବସ୍ଥାନ କରିବା ଦୂରେଥାଉ ତାହାଭିତରକୁ ସୁଦ୍ଧା ସେ ପ୍ରବେଶ କରିନଥିଲେ । ନଗର ମଧ୍ୟରେ ନ ଯାଇ ତୁଳସୀ ପୁରରୁ ବାହାର ଗଲେ ବୋଲି ଅନେକେ ସନ୍ଦେହ କରି ପାରନ୍ତି; ମାତ୍ର ସହରର ଆକାର ଓ ଅବସ୍ଥିତି ଅନ୍ୟକାଳ ପରି ନଥିଲା । ସମ୍ଭବତଃ ସେସମୟରେ ଯାତ୍ରୀ ମାନେ ବଡ଼ାନାଳି ବା ଖାଉନାଳୀ ( ପୂର୍ବନାମ ବାରାଣସୀ ) ବାଟେ ତୁଳସୀପୁର ଅତିକ୍ରମ କରୁଥିଲେ । କବି ତୁଳସୀ ପୁର ପ୍ରଭୃତି ଭ୍ରମଣ କରି ପରିଶେଷରେ ସ୍ୱଜନ୍ମ ଭୂମିରେ ଉପସ୍ଥିତ ହୋଇ ଜୀବନର ଅବଶିଷ୍ଟାଂଶ ଯାପନ କଲେ ।

ଜନ୍ମସ୍ଥାନ ।

ଅତି ପ୍ରାଚୀନ କାଳରେ ଏହି ଦେଶରେ ଓଡ୍ରମାନଙ୍କର ଅଧି-ବାସ ଥିଲା (୧) ମହାଭାରତ ଏବଂ ଅନ୍ୟାନ୍ୟ ପୁରାଣ ଗ୍ରନ୍ଥରେ ମଧ୍ୟ ଓଡ୍ରନାମର ଉଲ୍ଲେଖ ଦେଖା ଯାଏ । ଓଡ୍ର ଉତ୍କଳନାମାନଃ-ଦ୍ୱିକାଶ୍ରୀ-ଶେଷ, ଉତ୍କଳାଦର୍ଶିତଃ-ପଥଃ ରଘୁବଂଶ, ଏହି ଦୁଇଟି ପଂକ୍ତିରୁ ସ୍ପଷ୍ଟ ବୁଝା ଯାଉଅଛି ଯେ, ଏଦେଶବାସୀମାନେ ଓଡ୍ର ଓ ଉତ୍କଳ ଉଭୟ ନାମରେ ଅଭିହିତ ହେଉଥିଲେ । ଉତ୍କଳନାମ ଏ ଦେଶର ପ୍ରାଚୀନ ହେଲେହେଁ ବିଶେ-ଷରେ ଓଡ୍ରମାନଙ୍କର ବାସ ହେତୁରୁ ପଶ୍ଚାତ୍ ଏହାର ନାମ 'ଓଡ୍ରଦେଶ'

---

*—୧ ମହାଭାରତରେ ସଭାପର୍ବରେ ସହଦେବ ଓଡ୍ରମାନଙ୍କୁ ଜୟ କରି ଥିବାର ଉଲ୍ଲେଖ ଅଛି । ପାଣ୍ଡ୍ୟାଂଶ୍ଚ ଦ୍ରାବିଡାଂଶ୍ଚୈବ ସହିତାଂଶ୍ଚୋଡ୍ରକେରଳୈଃ । ସଃ ପଃ ଅ ୩୧ । ୭୧ । ଓଡ୍ରଗଣ ପାଣ୍ଡବଙ୍କୁ ହସ୍ତିଦନ୍ତ ଉପହାର ଦେଇଥିଲେ । ଉତ୍କଳ ଯେ ହସ୍ତିବହୁଳଦେଶ ଥିଲା, ତାହା ଏଥିରୁ ଏବଂ "ସ ତୀର୍ତ୍ତ୍ୱା କପିଶାଂ ସୈନ୍ୟୈର୍ବଦ୍ଧ ଦ୍ୱିରଦ ସେତୁଭିଃ" ରଘୁବଂଶର ଏହି ପଂକ୍ତିରୁ ସୂଚିତ ହେଉଅଛି ।

୨ କପିଳ ସଂହିତାରେ—ଓଡ୍ରଦେଶ ଇତିଖ୍ୟାତୋ ଦେଶୋ ଭାରତ-ଭୂଷଣଃ । ଅ ୨ ମ, ତସ୍ୟାଦୋଷ୍ଣେ ସଦା ସନ୍ତ [illegible] ବର୍ଣ୍ଣୋତ୍ତମଃ

ହେଲା । 'ଓଡ୍ରଦେ'ଶରୁ ସମ୍ଭବତଃ 'ଓଡ଼ିଶା' ନାମଟି ଆସିଅଛି । ଚଉ-ଙ୍କର ମହାଭାରତରେ ଓଡ଼ରାଷ୍ଟ୍ର ନାମଟିର ବହୁଳ ଉଲ୍ଲେଖ ଦେଖି ମଧ୍ୟ ଏହା ଅନୁମାନ ହୁଏ, ସେ କାଳରେ ଅନେକେ ଏ ଦେଶକୁ ଓଡ଼ଦେଶ ବା ଓଡ଼ରାଷ୍ଟ୍ର ବୋଲି କହୁଥିଲେ । ବୋଧହୁଏ ସେହି ଗୌରବ ଯୁଗରେ ଗୀତ ପୁରୁଷମାନେ ଯୁଦ୍ଧ ପ୍ରବର୍ତ୍ତନା ବା ସୈନ୍ୟାଦିର ଉତ୍ତେ-ଜନା କାଳରେ ଗୀତୋଚିତ ଭାଷାରେ ସ୍ୱଦେଶର ଓଜସ୍ୱୀ 'ଓଡ଼ରାଷ୍ଟ୍ର' ନାମଟି ଉଚ୍ଚାରଣ କରିବାକୁ ସ୍ୱତଃ ପ୍ରବୃତ୍ତ ହେଉଥିଲେ । କବିଙ୍କ କଳ୍ପନାରୁ ଏହି ନାମର ଅତି ଅପୂର୍ବ ବ୍ୟାଖ୍ୟା ମଧ୍ୟ ବାହାରି ଅଛି । "ସସାଗରା ପୃଥିବୀ ସେ ନବଭାଗ କଲେ । ନବଖଣ୍ଡ ମେଦିନୀ ନବ ପୁତ୍ରଙ୍କୁ ଦେଲେ । ରାଜାର ଜ୍ୟେଷ୍ଠ ପୁତ୍ର ନାମ ଗୁରୁ ନୃପତି । ଓଡ଼ଣୀ ଭାରିଯା ତାର ଅଟଇ ସନ୍ତତି । ମାତାଙ୍କର ଶାସ୍ତ୍ର ଯେ ଓଡ଼ରାଷ୍ଟ୍ର ମଣ୍ଡଳେ, ତେଣୁ ଓଡ଼ିଶାକୁ ଓଡ଼ରାଷ୍ଟ୍ର ଯେ ବୋଇଲେ । ଆ୧ ପ: । ଶେଷୋକ୍ତ ପଂକ୍ତିରୁ ସ୍ପଷ୍ଟ ଅନୁମିତ ହେଉଅଛି ଯେ, ଓଡ଼ିଶାର ପଶ୍ଚାତ୍ ଓଡ଼ରାଷ୍ଟ୍ର ନାମର ସୃଷ୍ଟି । ସେ ଯାହାହେଉ ଏହି ଓଡ଼ିଶା ସର୍ବପ୍ରଥମେ ଓଡ୍ର ବା ଶୂଦ୍ରମାନଙ୍କର ବାସଭୂମି ଥିଲା । ସେମାନେ ନାନା ଶାଖାରେ ବିଭକ୍ତ ଥିଲେ । ଭିନ୍ନଶାଖାର ଆଚାର ବ୍ୟବହାର ସାମାଜିକ ନିୟମା-ଦିରେ କିଞ୍ଚିତ୍ ପାର୍ଥକ୍ୟ ରହିଥିଲା । କୃଷି (ବିଶେଷତଃ ଆଖୁଚାଷ) ଓ ଗୋରକ୍ଷଣ ସେମାନଙ୍କର ସାଧାରଣ ବ୍ୟବସାୟ ହେଲେହେଁ, କୌଣସି ସମ୍ପ୍ରଦାୟ ତାହାକୁ ନିକୃଷ୍ଟ ବୃତ୍ତି ବୋଲି ମନେ କରୁଥିଲେ । ସୁବିଖ୍ୟାତ ଭାରତୀୟ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ରାଜେନ୍ଦ୍ର ଲାଲ ମିତ୍ର ପ୍ରକାଶ କରିଅଛନ୍ତି ଯେ ଏହି ଶୂଦ୍ରମାନେ ଉତ୍କଳର ସର୍ବ ଅଞ୍ଚଳରେ ପରି-ବ୍ୟାପ୍ତ ହୋଇଥିଲେ ଏବଂ ସମସ୍ତେ ଏକା ବ୍ୟବସାୟ କରୁ ନ ଥିଲେ ।

---

ତନ୍ତ୍ରେଣ ଦ୍ୱିଜଶ୍ରେଷ୍ଠ-ଜନାନାମ୍ ଉତ୍ତମାନଣୀ । ମହାକବିଶତବିଖ୍ୟାତା ସର୍ବପାପାପ-ନୋଦନୀ । ୨ ସ୍

(୧) ବ୍ରାହ୍ମଣୀ ନଦୀର ଦକ୍ଷିଣତଟବର୍ତ୍ତୀ ଶୂଦ୍ରମାନେ ଆଖୁଚାଷ ପ୍ରଭୃତି କଲେ ଜାତି ଯିବ ବୋଲି ବୁଝୁଥିଲେ । ଟିକିଏ ଭିତରକୁ ପ୍ରବେଶ କଲେ ଅମ୍ଭେମାନେ ଏହାର ସତ୍ୟ ପ୍ରତ୍ୟକ୍ଷ କରି ପାରିବୁଁ । ଶୂଦ୍ରମାନେ ଏ ଦେଶର ବହୁ ପୂର୍ବକାଳର ଅଧିବାସୀ, ବୁଦ୍ଧିମାନ୍ ଏବଂ ଶାରୀରିକ ଶକ୍ତିସମ୍ପନ୍ନ । ସେମାନେ ଅପ୍ରତିହତ ବିଧାନରେ ପ୍ରଯତ୍ନଶୀଳ ହୋଇ ଉନ୍ନତ ଆଦର୍ଶ ଅନୁକରଣରେ ନିଜ ଜାତିର ପ୍ରାଧାନ୍ୟ ସ୍ଥାପନରେ ପ୍ରୟାସୀ ହେଉଥିବେ । ବର୍ତ୍ତମାନ ସୁଦ୍ଧା ଅମ୍ଭେମାନେ ଏହି ଶୂଦ୍ରବଂଶୀୟ 'ଶୁଢ଼' ଅଧିବାସୀମାନଙ୍କ ଠାରେ ଏହି ଚେଷ୍ଟା ଦେଖୁଅଛୁଁ । ବର୍ତ୍ତମାନ ଓଡ଼ିଶାର ସ୍ଥଳବିଶେଷରେ ଯେଉଁ ସ୍ୱଳ୍ପସଂଖ୍ୟକ ଶୁଢ଼ ଅଛନ୍ତି, ସେମାନଙ୍କ ଆଚାର ବ୍ୟବହାରାଦି କରଣଙ୍କ ଅନ୍ତରଠାରୁ ବିଶେଷ ନିକୃଷ୍ଟ ହେଲେହେଁ; ଶୂଦ୍ରଚଷାମାନଙ୍କ ଅପେକ୍ଷା ବହୁଗୁଣରେ ଉତ୍କୃଷ୍ଟ । ତଥାପି ସେମାନେ ଦିନକୁଦିନ ତାହାର ଅଧିକ ସଂସ୍କାର (୨) କରିବାକୁ ଚେଷ୍ଟା କରୁଅଛନ୍ତି । ଏହି ଶୂଦ୍ରମାନଙ୍କ ମଧ୍ୟରୁ ଯେଉଁମାନେ କ୍ରିୟା ଦ୍ୱାରା ନିଜର ଶ୍ରେଷ୍ଠତା ପ୍ରତିପାଦନ କର-

---

(୧) These ods cultivate sugar-cane, and carry burthens on bullocks, which no other uriyas, particularly those living south of Brahmani river, can do without losing their caste. "Antiqus ties of Orissa Vol II. P4.

(୨) ବର୍ତ୍ତମାନ ଏହି ଶୁଢ଼ ବା ଶୁଢ ଅଧିବାସୀଙ୍କର ସଂଖ୍ୟା ଓଡ଼ିଶାରେ ଅତି ଅଳ୍ପ; ବାଲେଶ୍ୱର ଜିଲ୍ଲାରେ ଶୂନ୍ୟ କହିଲେ ଚଳେ । ୧୮୭୧ ଖ୍ରୀଷ୍ଟାବ୍ଦର ସେନ୍ସସ ସଂଖ୍ୟା ଅନୁସାରେ କଟକ ଜିଲ୍ଲାରେ ଶୁଢ଼ିଙ୍କର ସଂଖ୍ୟା ୨୮; ୨୭୬; ବାଲେଶ୍ୱରରେ ୪ ଜଣମାତ୍ର । (Sudras or sudıs agriculturist 28,276 in in number P74. Sudas 4 in number P275 Hunter's statistical accounts of Bengal Vol.XVIII) ପୁରୀ ଜିଲ୍ଲାରେ ବିଶେଷତଃ ଖଣ୍ଡପଡ଼ା ଏବଂ ଖୋର୍ଦ୍ଧା ଅଞ୍ଚଳରେ ଏ ସମସ୍ତଙ୍କର ବସତି ଅଛି । ଶୁଢ଼ିମାନଙ୍କର ସ୍ତ୍ରୀମାନେ ଚଷାଙ୍କ ସହିତ ବିଭାହ ସମ୍ପର୍କ ରଖନ୍ତି ନାହିଁ । ଖାଦ୍ୟ ପିଇବାରେ ସେମାନଙ୍କର ଅଭକ୍ଷ୍ୟ । ସେମାନେ

ଥିଲେ ସେହିମାନେ କୌଶଳକ୍ରମେ ଉପରକୁ ଉଠି କରଣସମ୍ପ୍ରଦାୟ-ଭୁକ୍ତ ହୋଇଅଛନ୍ତି । ବ୍ରାହ୍ମଣୀ ନଦୀର ଦକ୍ଷିଣ ଜନପଦବାସୀ (ବୂରଜ-ନଦୀ ଦକ୍ଷିଣ କୂଳେ ଅଃ ପଃ) ପୂର୍ବୋକ୍ତ ସତ୍‌ଶୂଦ୍ର ଶାଖା ମଧ୍ୟରେ

---

* ଓଡ଼ଚଷାମାନେ ଶୂଦ୍ରମାନଙ୍କ ଅପେକ୍ଷା ନିକୃଷ୍ଟ ଏବଂ ସେମାନଙ୍କ ସାମାଜିକ ପ୍ରଥା ଓ ଆଚାର ବ୍ୟବହାରାଦିରେ ଅନେକ ପାର୍ଥକ୍ୟ ଅଛି । ଅନେକମାନେ ଏହି ଓଡ଼ଚଷାଙ୍କୁ ଏକ କଥାରେ ଆଦିମ ଓଡ଼ମାନଙ୍କର ବଂଶଧର କହି ଦେଇ ଯାଉଛନ୍ତି, ମାତ୍ର ଏହା କିପରି ସଙ୍ଗତ ହେବ ? ଯେଉଁମାନେ ଏକ ସମୟରେ ସମଗ୍ର ଉତ୍କଳ ବ୍ୟାପି ଥିଲେ, ସେମାନଙ୍କର ଏହି କେତେକ ଜଣ କେବଳ ବଂଶଧର ? ଅଉ ସବୁ କାହିଁ ଗଲେ ? ଏଥିପୂର୍ବେ ଲେଖା ଯାଇଅଛି ଯେ ଏହି ଶୂଦ୍ରମାନେ ନାନା ଶାଖାରେ ବିଭକ୍ତ ହୋଇ ବିଭିନ୍ନ ବ୍ୟବସାୟ ଅବଲମ୍ବନ କରିଥିଲେ । ସେହି ଶାଖା ପ୍ରଶାଖାରୁ ଚଷା, ଗୁଡ଼ିଆ ଗୋଲ ଥୋଇବ୍ୟା ତେଲି ମାଳୀ ପ୍ରଭୃତି ଶୂଦ୍ରଜାତିର ସୃଷ୍ଟି ହୋଇଅଛି । ଶ୍ରୀଯୁକ୍ତ ହଣ୍ଟର ସାହେବ ଏମାନଙ୍କୁ ସତ୍‌ଶୂଦ୍ର (Respectable sudra castes) ବୋଲି ନିର୍ଦ୍ଦେଶ କରିଅଛନ୍ତି । ଏମାନଙ୍କ ମଧ୍ୟରେ ଯେଉଁମାନେ ବ୍ୟବସାୟୀ ଏବଂ ବୁଦ୍ଧିମାନ୍ ସେମାନେ ସ୍ୱ ସ୍ୱ ବ୍ୟବସାୟାନୁଯାୟୀ ନାମ ଲାଭ କରି ସମାଜ ମଧ୍ୟରେ ନୂତନ ହୋଇ ପରିଗଣିତ ହେଲେ ଯେଉଁମାନେ ନିର୍ବୋଧ ଏବଂ ବ୍ୟବସାୟ ବର୍ଜିତ, ସେହିମାନେ କେବଳ ପୈତୃକସ୍ୱତ୍ୱ ଶୂଦ୍ର ବା ଶୂଦ୍ର ନାମ ଛଡ଼ା ଅଉ କିଛି ପାଇଲେ ନାହିଁ । ତେଣୁ ଶୂଦ୍ର ସମାଜର ଏହି ହୀନ ଶାଖା ବର୍ତ୍ତମାନ ଓଡ଼ିଶାରେ ଓଡ଼ଚଷା ବୋଲି ଦୃଷ୍ଟ ହେଉଅଛନ୍ତି । "ଓଡ ଶବ୍ଦ ବର୍ତ୍ତମାନ ଓଡ଼ିଶାରେ ଏକ ଘୃଣ୍ୟ ବା ତିରସ୍କାରବାଚକ ଶବ୍ଦ ହୋଇ ପଡ଼ିଅଛି,' ଓ ଇଃ ପୃଃ ୨° । ଏହି ଓଡ଼ମାନଙ୍କ ବାସସ୍ଥାନର ପରିମାଣ ପୂର୍ବେ ୧୧୫୦ ମାଇଲ ଥିଲା । ପ୍ରସିଦ୍ଧ ପରିବ୍ରାଜକ ହୁଏନ୍‌ସାଂ ପ୍ରକାଶ କରିଅଛନ୍ତି । ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ବହୁ ଐତିହାସିକମାନଙ୍କର ମତ ସଙ୍କଳନପୂର୍ବକ ତତ୍ସମ୍ବନ୍ଧରେ ଏପରି ଲେଖିଅଛନ୍ତି,— "ପୁରୀ ଜିଲ୍ଲାରେ (ବିଶେଷତଃ ଖୋର୍ଦ୍ଧାରେ ) ଓଡ଼ଙ୍କ ସଂଖ୍ୟା ୮୬ ସହସ୍ରରୁ ଅଧିକ; ଗଡ଼ଜାତରେ ସାଢ଼େ ତିନି ସହସ୍ର, ବାଲେଶ୍ୱରରେ ଶୂନ୍ୟ ଏବଂ କଟକରେ ୨୦ ଜଣ ବୋଲି ବଙ୍ଗ ସେନ୍‌ସସ୍ ବିବରଣୀରେ ଲିଖିତ ଅଛି । ମାତ୍ର କଟକରେ ପ୍ରକୃତ ଓଡ଼ଙ୍କ ସଂଖ୍ୟା ଏତଦପେକ୍ଷା ଅଧିକ ଏବଂ ସେମାନେ ପ୍ରାୟ ବେଣାଝଅ ଓଡ଼ଙ୍କ-ଶ୍ରେଣୀଭୁକ୍ତ । କୌଶଳ-କ୍ରମେ ସେମାନେ ହିନ୍ଦୁ ସମାଜର ଗୋହଡ ଭଣ୍ଡାରୀ ଓ ଅନ୍ୟାନ୍ୟ ନିକୃଷ୍ଟ ଜାତିଙ୍କ ଉପରେ ପ୍ରଭାବ ଚଳାଇ ଓ ହିନ୍ଦୁଙ୍କ ସହବାସରେ ସ୍ୱ ସ୍ୱ ଆଚାର ନୀତିର କେତେକ ପରିବର୍ତ୍ତନ ଘଟାଇ; ଝିଅଳା ମଧ୍ୟ (ସମ୍ଭବତଃ ଶୂଦ୍ର ଚଷାଙ୍କ ସଙ୍ଗେ) ବିବାହ କରି; ଆପଣାକୁ ବଡ଼ ଜାତି ବୋଲି ମଣନ୍ତି ଏବଂ ପେଣ୍ଡା ହଳିଆ, ଦହି ହଳିଆ ଓ ଶୂକର ଲଙ୍ଗ

ଆମ୍ଭମାନଙ୍କର କବି 'ଶାରଳା ଦାସ' ଜଣେ ତାହାଙ୍କର ଉପାଧି ପରିଡ଼ା', କେହି କେହି କହନ୍ତି ପରିଡ଼ା ସ୍ୱଜନଦତ୍ତ ଉପାଧି । ପୂର୍ବେ ତାଙ୍କର ସ୍ୱ.ଘଂ ସଜ୍ଞା ଥିଲା । ବର୍ତ୍ତମାନ ଉତ୍କଳରେ ପରିଡ଼ା ଆଖ୍ୟାଧାରୀଙ୍କର ସଂଖ୍ୟା ଅଧିକ । ବାଲେଶ୍ୱର ଜିଲ୍ଲାରେ ଏମାନଙ୍କର ସଂଖ୍ୟା ୧୨ ଥିବାର ଲୋକସଂଖ୍ୟା ବିବରଣୀରେ (୧) ପ୍ରକାଶିତ । ଏହି ପରିଡ଼ାମାନେ ଅବଶ୍ୟ କରଣମାନଙ୍କଠାରୁ ନିକୃଷ୍ଟ । (୨) ବୃତ୍ତି ତାଙ୍କର ଜାତୀୟ ବ୍ୟବସାୟ । କବିଙ୍କର ପୂର୍ବ ନାମ 'ସିଦ୍ଧେଶ୍ୱର' ଥିଲା ବୋଲି ଜଂବଦନ୍ତୀରୁ ପ୍ରକାଶ ପାଏ । ତାହାହେଲେ ପୂର୍ଣ୍ଣନାମ, 'ସିଦ୍ଧେଶ୍ୱର ପରିଡ଼ା' (୩) । ଜାତିରେ ଶୂଦ୍ର, ସେସମୟରେ ଏହିଜାତୀୟ ବ୍ୟକ୍ତି ସମସ୍ତେ ଶୂଦ୍ର ନାମରେ ଅଭିହିତ ହେଉଥିଲେ । "ସେ ଅନନ୍ୟା ଶୂଦ୍ର—" ପ୍ରଭୃତି ପଂକ୍ତିରେ କବି ମଧ୍ୟ ତଷା ପରିବର୍ତ୍ତରେ ଶୂଦ୍ର ନାମ ବ୍ୟବହାର କରିଅଛନ୍ତି । ସେ ଯାହା ଥାଉ କବି ସ୍ୱଗ୍ରନ୍ଥରେ ନିଜ ବଂଶର ପରିଚୟ କେଉଁଠି ଦେଇ ନାହାନ୍ତି । ତାଙ୍କ ଗ୍ରନ୍ଥ ପାଠରୁ କେବଳ ଏତିକି ଜଣାଯାଏ ଯେ, ଚନ୍ଦ୍ରଭାଗା ନଦୀର (କନକପୁର ପାର୍ଶ୍ୱବାହିନୀ ଯୂଦ୍ରନଦୀ ) ଘାଟିଅଲ ପରଶୁରାମ ତାହାଙ୍କର ଅଗ୍ରଜ

---

ବୋଲି ସେଉଁ ଅନ୍ୟ ଜନଜାତିୟ ଓଡ଼ ଅଛନ୍ତି ସେମାନଙ୍କୁ ଅସ୍ପୃଶ୍ୟ ଜ୍ଞାନ କରନ୍ତି । ଏମନ୍ତ କି ଶୂଦ୍ର ତଣ୍ଡାଙ୍କୁ ସେମାନଙ୍କ ହାଲିକଠାରୁ ହୀନ ବୋଲି କହନ୍ତି । ତୃତୀୟ ଲୋକଗଣନାର ଗଣନାକାରମାନେ ତାଙ୍କୁ ସାଧାରଣ ଶୂଦ୍ରଚଷା ଶ୍ରେଣୀରେ ଭୁକ୍ତ କରିଅଛନ୍ତି । ଶୋର୍ଟାର ଓଡ଼ମାନେ ବିଶେଷତ୍ୱରୂପେ ଓଡ଼ ବୋଲି ନିର୍ଦ୍ଦିଷ୍ଟ ଏବଂ ସେମାନଙ୍କ ମଧ୍ୟରେ ଶୂଦ୍ର ଜାତିର ପରସ୍ପର ଦେବା ନେବା; ଖିଆ ପିଆ କୌଣସି ବିଷୟରେ କିଛି ବ୍ୟବଧାନ ନାହିଁ । ଏମାନଙ୍କ ହସ୍ତର ପାଣି ଅସ୍ପୃଶ୍ୟ । ହିନ୍ଦୁ ଜାତିର ଶବଦାହର ବିଶେଷ ଦାୟୀ ନାହିଁ । " ଓଡ଼ିଶା ଇତିହାସ, ପୃ ୨୦ ।

(୧) Paridas 12 in number in Balasore, P. 275 S.A, B, Vol. XVIII.

(୨) ଏହି ଜାତିର ସମ୍ପ୍ରଦାୟ ବର୍ତ୍ତମାନ କରଣ ଶ୍ରେଣୀଭୁକ୍ତ ହୋଇ ପରିଡ଼ା ନାମ ପରିବର୍ତ୍ତରେ 'ପରିଜା' କହିଅଛନ୍ତି ।

(୩) କେହି ପୂର୍ବ ନାମ ଶାରଳ ସ୍ୱାମୀ ବୋଲି କହନ୍ତି ।

ବଳ । ଏହି ପରଶୁରାମଙ୍କ କନକାବତୀ ପାଟଣା (ଅଧୁନାତନ କନକ-ପୁର) ବସାଇଥିଲେ । ଏହିଗ୍ରାମ କଟକରୁ ତାଳଦଣ୍ଡା ନାଲ ବାଟେ ପ୍ରାୟ ୧୫ କୋଶ ପୂର୍ବରେ ଅବସ୍ଥିତ । ତାହାର ଉତ୍ତର ପଶ୍ଚିମବର୍ତ୍ତୀ ଶାରଳା ନାମକ ଗ୍ରାମ (ଅଧୁନାତନ ନାମ ବଡ଼ ଶାସନ) କବିଙ୍କର ଆଦ୍ୟ ବାସସ୍ଥାନ ଥିଲା । ଅଦ୍ୟାବଧି କବିଙ୍କର ପରମାରାଧ୍ୟା ଶାରଳା ଦେବୀଙ୍କର ମନ୍ଦିର ପ୍ରଥମେ ଏହି ଗ୍ରାମରେ ଥିଲା । ମହାଭାରତର ନିମ୍ନୋଦ୍ଧୃତ କତିପୟ ପଂକ୍ତିରୁ ଏ ସତ୍ୟର ପ୍ରମାଣ ମିଳୁଅଛି ।

ନୀଳସୁନ୍ଦର ଗିରି ଉତ୍ତର ଦିଗ କୋଣେ ।
ସାରସ୍ୱତ ଭୂମି ଉତ୍କଳ ଖଣ୍ଡ ଅଗ୍ନିକୋଣେ । (ଓଡ଼ିଶା)
ଚନ୍ଦ୍ରଭାଗା ବୋଲିଣ ନଦୀ ଏକ ଗୋଟି ।
ବୃଦ୍ଧ ମାତାଙ୍କ ପାଶୁଣେ ମହୋଦଧି ଭେଟି ।
ସେ ନଦୀ ତୀରରେ ପରଶୁରାମ ଯେ ପାଟଣ ।
କନକାବତୀ ନାମେ ପାଟଣା ତୋଳାଇଣ ।
ତା ଉତ୍ତରେ ଅନନ୍ତ ଶାରଳ ବୋଲି ଗ୍ରାମେ ।
ବିଜୟେ ମାହେଶ୍ୱରୀ ଶାରଳା ଚଣ୍ଡୀ ନାମେ । ଆଃ ପଃ
ଚିତ୍ରୋତ୍ପଳା ନଦୀ ଯେ ଉତ୍ତର ଭାଗେଣ ।
ଜଙ୍ଘେର ପୁର ନାମେ ଅଟଇ ପାଟଣ । ମଃ ପଃ ।
କନକ ପୁର ପାଟଣା ଘର ପରଶୁରାମ ।
ମୁହିଁ ତାର ଅନୁଜ ଶାରଳା ଦାସ ନାମ ।”

ଏହି କତିପୟ ପଂକ୍ତିରୁ ସ୍ପଷ୍ଟ ବୁଝା ଯାଏ ଯେ ଜ୍ୟେଷ୍ଠ ପରଶୁରାମ କନକପୁରରେ ଏବଂ କନିଷ୍ଠ ଶାରଳଗ୍ରାମରେ ବାସ କରୁଥିଲେ ।

*ଅନେକ ଏହି ପରଶୁରାମଙ୍କୁ ଜାମଦଗ୍ନ୍ୟ ପରଶୁରାମ ବୋଲି ଜାଣନ୍ତି । ଏପରି ବିଶ୍ୱାସର କାରଣ ଜାମଦଗ୍ନ୍ୟ ଶାରଳା ମୂର୍ତ୍ତିର ପ୍ରତିଷ୍ଠା କରିଥିଲେ ବୋଲି କିଂବଦନ୍ତୀ ଅଛି ।

ହୁର ଘାଇ ଦୁଇଟି ଗ୍ରାମ ଅଧିକାର କରିଥିବାର ସୂଚନା ଦେଉଅଛି, ଉଭୟଙ୍କର କିଛି ବୟସ ସମ୍ପର୍କ ଥିଲା । ନାବିକ ପରଶୁରାମ ବୋଧହୁଏ ଚିନ୍ତ୍ରାଗା ନଦୀରେ ନୌକାରେ ବ୍ୟବସାୟ ଦ୍ୱାରା ଧନୀ ହୋଇଥିବେ । ବୃଦ୍ଧ ନଦୀ (ଆଧୁନିକ ନାମ ବୃଦ୍ଧା ନଈ) ବର୍ତ୍ତମାନ ଛନୁଳଅପଦା ଗ୍ରାମର ପଶ୍ଚାଭାଗରେ ବହମାନା । ଏହି ଗ୍ରାମ କନକପୁରର ପ୍ରାୟ ଏକ କୋଶ ଉତ୍ତରରେ ଅବସ୍ଥିତ । ଏହାର ଦକ୍ଷିଣରେ ମହାନଦୀ ପ୍ରବାହିତା । ଏହି ଚେନୁଳଅପଦା କବିଙ୍କର ଜନ୍ମସ୍ଥାନ ନ ଥିଲେହେଁ ଏଥିରେ ତାହାଙ୍କର ଚରମ କାଳ ଅତିବାହିତ ହୋଇଅଛି । ଗ୍ରାମସ୍ଥ ଲୋକେ କହନ୍ତି ଯେ, କବିଙ୍କର ଯଦୁଅନ୍ତ ଭୂସମ୍ପତ୍ତି ଥିଲା । ଶାସ୍ତେ-ଳରେ ଅବସ୍ଥାନ କାଳରେ ଦୂରବର୍ତ୍ତୀ ପୂର୍ବସୀମାନ୍ତ ଗ୍ରାମମାନଙ୍କରେ ଭୁଜଙ୍ଗର ଦୁଷ୍ଟ ଲୋକମାନେ ଆସି ଲୁଣ୍ଠନ ଓ ଉତ୍ପାତ କରୁଥିଲେ ଉକ୍ତ ସ୍ଥାନମାନ ତେତେବେଳେ ଜଙ୍ଗଲମୟ ଥିବାରୁ ଲୁଣ୍ଠନର ସୁବିଧା ହେଉଥିଲା । ଶାରଳା ଦାସ ଏହି ଅତ୍ୟାଚାର ନିବାରଣ ନିମିତ୍ତ ଜଙ୍ଗଲ ମଧ୍ୟସ୍ଥିତ ସ୍ୱାହାମା ଗ୍ରାମରେ ଅବସ୍ଥାନ କଲେ । କଥିତ ଅଛି, ଏହି ସ୍ୱାହାମାରେ କିଛିକାଳ ବାସ କଲା ଉତ୍ତାରେ କବିଙ୍କୁ ଦେବୀଙ୍କର ସ୍ୱପ୍ନାଦେଶ ହେଲା ଯେ, 'ତୁ ସେଠାରେ ରହିଲେ ମୋତେ ସଙ୍ଗରେ ନେଇ ଯା' । ଭକ୍ତ ବିସ୍ମିତ ହୋଇ ଗଡ଼ ବାଧି ଜିଜ୍ଞାସା କରନ୍ତେ ଦେବୀ ଉତ୍ତର କଲେ "ତୁ ପଛକୁ ନ ଚାହିଁ ଆଗେ ଆଗେ ଚାଲ୍, ମୁଁ ପଛେ୨ ଯାଉଛି । ଆଉ ଯେଉଁଠାରେ ତୁ ଗୋଟିଏ ବକ ପାଷାଣ ଧରିଥିବାର ଦେଖିବୁ* ସେହିଠାରେ ଗୃହନିର୍ମାଣ କରିବୁ ।" ତଦନୁସାରେ କବି ସବିସ୍ମୟ ଭାବରେ ଆଗେ୨ ଗଲେ । କିଛିଦୂର ଯାଇ ରହସ୍ୟ ଜାଣିବାକୁ ପଛକୁ ଚାହାନ୍ତେ ଦେବୀ ଆଉ ନ ଚଳି ସେହିଠାରେ

---

* ସ୍ଥାନର ମାହାତ୍ମ୍ୟ ପ୍ରକାଶନ ଏ ପ୍ରକାର କଳ୍ପନାର ଉଦ୍ଦେଶ୍ୟ । ବକ ପାଷାଣ ଧରିଥିବା ଭାବ ଏହା ସୂଚନା ଦେଉଅଛି, ସେ ସ୍ଥାନରେ ମୂର୍ତ୍ତିପୂଜା ଶାକ୍ତଧର୍ମ ପଣ୍ଡିତରୁ ଜଣେ ପାରେ ।

ରହିଲେ । * ତଦନନ୍ତର ନୃପ ବହୁଦୂର ଅଗ୍ରସର ହୋଇ ଗୋଟିଏ ପଡ଼ିଆରେ ସ୍ୱପ୍ନାନୁରୂପ ବକ ସର୍ପଙ୍କୁ ଧରି ଥିବାର ଦେଖି ଦେବୀଙ୍କ ଆଦେଶାନୁସାରେ ତହିଁ ଗୃହ ନିର୍ମାଣର ବ୍ୟବସ୍ଥା କଲେ । ଏହି ସ୍ଥାନ ବର୍ତ୍ତମାନ 'ଉଅସ ଗଡ଼' ବୋଲି ଅଖ୍ୟାତ ହେଉଅଛି । ତାହାର ଚତୁଃପାର୍ଶ୍ୱରେ ବର୍ତ୍ତମାନ ଚନ୍ଦନପଦା ଗ୍ରାମର ସୀମା ରହିଅଛି । ଏହି ଜନଶ୍ରୁତିରୁ ଅନୁମିତ ହେଉଅଛି ଯେ, ଯେଉଁ ଚନ୍ଦନପଦା ଏହିକ୍ଷଣି ବହୁ ଲୋକାଳୟ ପୂର୍ଣ୍ଣ; ନୃପଙ୍କ ଅବସ୍ଥାନ କାଳରେ ତାହା ସେପରି ନ ଥିଲା । ପ୍ରାୟ ଗୋଟିଏ ବଡ଼ ପଡ଼ିଆ ଥିଲା । ସମ୍ଭବତଃ ସେଠାରେ ଅନେକ ଚନ୍ଦନ ଗଛ ଥିବାରୁ ଅଥବା ଚନ୍ଦନ ବ୍ୟବସାୟୀ ମାନଙ୍କର କେନ୍ଦ୍ରସ୍ଥଳ ଥିବାରୁ ପଛେ ତାହାର ନାମ ଏପରି ହୋଇଅଛି । ଅନୁମାନ ହୁଏ ଉକ୍ତ ନୃପଙ୍କ ଅବସ୍ଥାନରେ ଅନେକ ସତ୍ସଙ୍ଗ ଲାଭ ଆଶାରେ ତାହାଙ୍କର ସହବାସୀ ହେବାକୁ ଲାଗିଲେ । ସେମାନଙ୍କ ଦ୍ୱାରା ଏବଂ ନୃପଙ୍କ ବଂଶଧରଙ୍କ ଦ୍ୱାରା କ୍ରମାଗତ ଏହି ସ୍ଥାନ ଜନାକୀର୍ଣ୍ଣ ଏବଂ ଲୋକାଳୟ-ପୂର୍ଣ୍ଣ ହୋଇ ବର୍ତ୍ତମାନ ପ୍ରାୟ ସହସ୍ର ଲୋକଙ୍କର ବାସ ହୋଇଅଛି । ଏହି ସ୍ଥାନର ଭୂମି ଅତି ଉର୍ବରା । ଉତ୍କଳ ଜାହ୍ନବୀ ମହାନଦୀର ଜଳରେ ଏହି ଅଞ୍ଚଳ ସୁଜଳ ଏବଂ ଶସ୍ୟଶ୍ୟାମଳ ।

ଶାରଳା ସିଂହବାହିନୀ ଚଣ୍ଡୀ ବିଶେଷ । ପୁରୀର ବିମଳା, ଯାଜପୁର ବିରଜା, କାକଟପୁର ମଙ୍ଗଳା ବାଣପୁର ଭଗବତୀ ପ୍ରଭୃତି ପ୍ରାୟ ଝଙ୍କଡର ଶାରଳା ଉତ୍କଳ ପ୍ରସିଦ୍ଧ । ଏଠାର ପୂଜାଦି ଅନ୍ୟାନ୍ୟ ଦେବୀପୀଠର ଅନୁରୂପ ହୋଇଥାଏ । ଏହାଙ୍କ ସମ୍ମୁଖରେ ମଧ୍ୟ ବଳିଦାନର ବିଧି ଅଛି । ଦଶହରା ଦିନ ଗୋଟିଏ ମହିଷ ବଳି ମଧ୍ୟ ଦିଆଯାଏ । ପୂଜାବିଧି ବ୍ୟତୀତ ବର୍ଷରେ ତିନଥର ପ୍ରସିଦ୍ଧ ଯାତ୍ରା ହୁଏ । ଦଶହରାଯାତ୍ରା, ଚନ୍ଦନଯାତ୍ରା ଏବଂ ବିଷୁବ ସଂକ୍ରାନ୍ତିରେ ଘଣ୍ଟପାଟୁଆ ଯାତ୍ରା । ଦଶହରା ଦିନ ଦେବୀ ବିମାନରେ

* ଏହି ମୂର୍ତ୍ତି ଏବେ 'ବଳଗାରଣା' ନାମରେ ଅଖ୍ୟାତ ହେଉଅଛନ୍ତି, ଏବଂ ଏହି ମନ୍ଦିର ଚନ୍ଦନପଦା ଗ୍ରାମର ଉତ୍ତରରେ ଅବସ୍ଥିତ ।

ପୁଙ୍କସ୍ନାନ ଶାବ୍ରେଳର ଚଉଦ୍ଦା ପଡ଼ିଆ * ପର୍ଯ୍ୟନ୍ତ ଯାତ୍ରା ଚଳନ୍ତି । ଗ୍ରୀଷ୍ମକାଳରେ ସେଠା ସରୋବରରେ ଚନ୍ଦନ ଯାତ୍ରା ହୁଏ । ଏ ଯାତ୍ରା ଉତ୍କଳରେ ଅନ୍ୟ କୌଣସି ଦେବୀଙ୍କର ହେବାର ଶୁଣା ନାହିଁ । ଏଥିରୁ ବୋଧ ସମ୍ଭବତଃ ବାରାହୀଙ୍କ ଦେବୀଙ୍କର ମହିମା ପ୍ରଖ୍ୟାପିତ ହେବା ପରେ ଜଳକଣ୍ଠବର୍ତ୍ତୀ ଭୁଜଙ୍ଗ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଅଛି । ସେ ସମସ୍ତ ବ୍ୟୟ ନିର୍ବାହ ନିମନ୍ତେ ଉକ୍ତ ରାଜା ପୂଜ-ଶଙ୍କା ବୃତ୍ତି ଛଡ଼ା ଅନ୍ୟର ବହୁ ଅଧିକାବୃତ୍ତି ଖଞ୍ଜି ଦେଇଅଛନ୍ତି । ଏହି ଦେବୀ ମାହେଶ୍ୱରୀ ହେଲେହେଁ ଏହାଙ୍କୁ ଅନେକେ ବୈଷ୍ଣବୀ ବୋଲି ପ୍ରକାଶ କରିଥାନ୍ତି । କବି ମଧ୍ୟ ଅନ୍ଦପଦରେ ସ୍ତ୍ରୀନେ କହିଅଛନ୍ତି ।—

"ମହାଯୋଗେଶ୍ୱରୀ ସେ ପରମା ବଇଷ୍ଣବୀ ।
ପ୍ରତ୍ୟକ୍ଷ ବରଦ୍ୟନ୍ତି ଯେ ପଦ୍ମା ସାଧ୍ୱୀ ।
କାଷ୍ଠା ଦାରୁକ୍ୟ ଅଟେ ସେଦେବୀ ମହାମାଈ ।
ପାଷାଣ ରୂପତା ଭାଷା ପାଷାଣ ଫୁଟଇ ।"

ବୈଷ୍ଣବୀ ସମ୍ମୁଖରେ ବଳିଦାନ ନିଷିଦ୍ଧ, କିନ୍ତୁ ଏଠାରେ ସେ ନିଷିଦ୍ଧାଚରଣ ହେଉ ଥିବାରୁ କାର୍ତ୍ତିକ ପୂର୍ଣ୍ଣିମା ଦିନ ହରିହରାର୍ଚ୍ଚନାଦି-ଦ୍ୱାରା ତାହାର ପ୍ରାୟଶ୍ଚିତ୍ତ ବିଧାନ ହୁଏ ବୋଲି ସ୍ଥାନୀୟ ଲୋକେ କହନ୍ତି । ଏହି ଚଣ୍ଡୀଙ୍କ ମନ୍ଦିର ବର୍ତ୍ତମାନ ଜନକପୁରରେ ଅବସ୍ଥିତ । ଜାମଦଗ୍ନ୍ୟ ପରଶୁରାମ ଏହି ମୂର୍ତ୍ତିର ପ୍ରତିଷ୍ଠା କରି ସ୍ୱୟଂ ପୂଜା କରିଥିବାର କଥା କବି ମହାଭାରତରେ ଉଲ୍ଲେଖ କରିଅଛନ୍ତି * । ଏ

* ଏହି ପଡିଆରେ ପୂର୍ବେ ପାକୃଅ ଯାତ ବା ଝାମଯାତ ବହୁତ ପରିମାଣରେ ହେଉଥିଲା । ଏକଦା ଗୋଟିଏ ପାଟୁଆ ଚରକ ଅର୍ଥାତ୍ (ଲୌହକୀଲକବେଧ) ହୋଇ ମରି ଯିବାରୁ ସେ ପ୍ରକାର ସାଧନା ବନ୍ଦ ହେଲା ଏବଂ ସେହି ଦିନଠାରୁ ତାହାର 'ନାମ ଚରକା ପଡ଼ିଆ' ହୋଇଅଛି ବୋଲି ସ୍ଥାନୀୟ ଲୋକେ କହନ୍ତି ।

• ଜମଦଗ୍ନି ନନ୍ଦନ ପୂଜିଲେ ଚର୍ଚ୍ଚିକାମ । ଦଧିବାମନ ଦର୍ଶନେ ଚୋଦ ଏକ ନାମ—ବିଃ ପଃ ପୃ ୧୪

ସମ୍ବନ୍ଧରେ ବହୁକାଳ ପୂର୍ବରୁ ଏହିପରି କିମ୍ବଦନ୍ତୀ ଅଛି ଯେ, ଧନୁର୍ଦ୍ଧର ପରଶୁରାମ ତୀର୍ଥାଟନ କାଳରେ ନାନା ତୀର୍ଥ ପର୍ଯ୍ୟଟନ କରି ଉତ୍କଳର ଅନ୍ତର୍ଗତ ଏହି ଚନ୍ଦ୍ରଭାଗା କୂଳରେ ଉପସ୍ଥିତ ହେଲେ । ନଦୀରେ ସ୍ନାନ କରିବାକୁ ଗଲାବେଳେ ସ୍ୱକରଭୂଷଣ ମହାଶରାସନର କୌଣସି ଆଧାର ନ ପାଇ ନଦୀତୀରରେ ତାହାକୁ ଲମ୍ବ ଭାବରେ ପୋତି ବସିଲେ ; ମାତ୍ର ପେଣ୍ଡୁଠାରେ ରକ୍ଷିବାକୁ ଗଲେ ସେଠାରେ ଧନୁଟି ସମ୍ପୂର୍ଣ୍ଣ ଗଳିଗଲା । ବୀରବର ଧନୁରକ୍ଷା ଲାଗି ଇତସ୍ତତଃ କରୁ କରୁ ଗୋଟିଏ ସ୍ଥାନରେ କିୟଦଂଶ ପଶିଯାଇ ଧନୁଟି ନିମ୍ନଭାଗରେ ରହିଗଲା । ତହୁଁ ସେ ସ୍ଥାନ କିଛି କୌତୂହଳବଶତଃ ଉକ୍ତ ସ୍ଥାନ ଖୋଳି ଦେଖି-ଲେ ଧନୁ ତଳେ ଖଣ୍ଡିଏ କୃଷ୍ଣଶିଳା ରହିଅଛି । ସେହି ମନୋହର ଶିଳା ଖଣ୍ଡିକ ପାଇ ବୀର ପରଶୁରାମ ସେଥିରେ ଧନୁଅଗ୍ରରେ ଗୋଟିଏ ଚଣ୍ଡୀମୂର୍ତ୍ତି ଖୋଦିତ କଲେ ଏବଂ ସେହି ସ୍ଥାନରେ ଚଣ୍ଡୀମୂର୍ତ୍ତିର ପ୍ରତିଷ୍ଠା କରି ପୂଜାବିଧି ଆରମ୍ଭ କଲେ । ପରଶୁରାମ ବିଭିନ୍ନ ସ୍ଥାନରେ ଚଣ୍ଡୀ ପୂଜା କରିଥିବାର ଶାରଳା ମହାଭାରତରେ ବର୍ଣ୍ଣିତ ଅଛି । କଟକ-ଚଣ୍ଡୀଙ୍କ ହସ୍ତରେ ପରଶୁରାମଦତ୍ତ ଖପର ଅଛି ବୋଲି କିବ ପ୍ରକାଶ କରିଅଛନ୍ତି (୧) । ସେ ଯାହାହେଉ, ବର୍ତ୍ତମାନ ଏହି କୀର୍ତ୍ତିଟିକି ନିରୀକ୍ଷଣ କଲେ ତାହା କୌଣସି ସୂକ୍ଷ୍ମ ଶିଳ୍ପାସ୍ତ୍ର ଦ୍ୱାରା ଖୋଦିତ ହୋଇଥିଲା ପରି ବୋଧହୁଏ ନାହିଁ । ଏଥିର ସ୍ଥୂଳଶିଳ୍ପ ଦେଖି ଅନେକ କିଂବଦନ୍ତୀକି ସତ୍ୟ ବୋଲି ବିଶ୍ୱାସ କରନ୍ତି । କିନ୍ତୁ ପରଶୁ-

---

(୧) ସେହି କଟାରରେ ତ୍ରିଭୁ ପରଶୁରାମ ବୀର । ନିକ୍ଷତ୍ରୀ କରିଲେ ପୃଥ୍ୱୀ ଏକବିଂଶବାର ।

ସେ ରୁଧିର ନେଇ ବୀର ତର୍ପଣ କଲେ । ଅବଶେଷେ ଭଇରବୀ ପୂଜା ସମାପିଲେ ।

ସେ କଟାର ନାମ ଉଗ୍ର ଭୈରବୀ ହେଲେ । ଭଇରବୀ ତାକୁ ନେଇ ହସ୍ତ ରଖିଲେ । ସ୍ୱ: ପ: ପୃ ୧୮

ସ୍ୱୟଂ ଏଠାକୁ ଆସନ୍ତୁ ବା ନ ଆସନ୍ତୁ, ଚଣ୍ଡୀ ପୂଜା କରନ୍ତୁ ବା ନ କରନ୍ତୁ ସେ ଯେ ନାନା ତୀର୍ଥ ପର୍ଯ୍ୟଟନ କରିଥିଲେ ଏହା ଇତିହାସ ପ୍ରସିଦ୍ଧ । ବର୍ତ୍ତମାନ ସୁଦ୍ଧା ଏହି ଅଞ୍ଚଳରେ 'ତୀର୍ଥମଠ' ନାମକ ସ୍ଥଳରେ ପରଶୁରାମଙ୍କର ଆସ୍ଥାନ ଅଛି । ପାଣ୍ଡବମାନେ ଏହି ଚନ୍ଦ୍ରଭାଗା ତୀରକୁ ତୀର୍ଥାଟନରେ ଆସି ଦେବୀଙ୍କୁ ପୂଜା କରି ଥିଲେ ବୋଲି କବିଙ୍କ ମହାଭାରତରେ ବର୍ଣ୍ଣିତ ଅଛି (୧) । ଅନ୍ୟାନ୍ୟ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ମଧ୍ୟ ଏହି ଚନ୍ଦ୍ରଭାଗା ନଦୀର ନାମ ଶୁଣାଯାଏ । ବର୍ତ୍ତମାନେ ଏହା କ୍ଷୀଣସ୍ରୋତା ହେଲେହେଁ ପୂର୍ବେ ଉତ୍କଳର ଏହା ଗୋଟିଏ ପୁଣ୍ୟ ସଲିଳା ସ୍ରୋତସ୍ୱତୀ ଥିଲା ବୋଲି ଅନୁମାନ ହୁଏ । ଏହାର ତଟପ୍ରଦେଶ ଘୋର ଜଙ୍ଗଲମୟ ଥିବାରୁ ଅନେକ ରାଜା ମୃଗୟାର୍ଥ ଏଠାକୁ ଆସିଥିବାର ପ୍ରମାଣ ମିଳେ (୨) । କିନ୍ତୁ ସେ ଚନ୍ଦ୍ରଭାଗା ଏହି, ଅବା କୋଣାର୍କ ଚନ୍ଦ୍ରଭାଗା ! ତାହା ଏଠାରେ ସିଦ୍ଧାନ୍ତ କରିବା ଅତି ଦୁରୂହବ୍ୟାପାରେ । କୋଣାର୍କ ଠାରେ ଅବଶ୍ୟ ଏହିକ୍ଷଣି ଚନ୍ଦ୍ରଭାଗା ନାମରେ କୌଣସି ନଦୀ ନାହିଁ ; ମାତ୍ର ଏଥିରେ ସେ ସନ୍ଦେହ ନିରସ୍ତ ହୋଇ ପାରିବ ନାହିଁ, ବୋଧହୁଏ ଅତି ପ୍ରାଚୀନ କାଳରେ ସେହି ନଦୀ କାଳକ୍ରମେ ଲୁପ୍ତ ହୋଇ ସାଗର ସୈକତରେ ପରିଣତ ହୋଇଥିବ । ସେ ଯାହାହେଉ ଏହି ନଦୀ ତୀରବର୍ତ୍ତିନୀ ଚଣ୍ଡୀ ଉତ୍କଳରେ ବହୁ କାଳରୁ ପ୍ରସିଦ୍ଧ ଏବଂ ବାଗ୍‌ଦେବୀରୂପେ ଆସ୍ୱଧିତ ହୋଇ ଆସୁଅଛନ୍ତି । ଆଦି ମହାକବି ଶାରଳାଦାସଙ୍କଠାରୁ ବର୍ତ୍ତମାନ

(୧) ବର୍ତ୍ତମାନ ଏହି ଚନ୍ଦ୍ରଭାଗାରେ 'ପାଣ୍ଡବକୁଠ' ବୋଲି ଗୋଟିଏ ତୀର୍ଥ ଅଛି ।

(୨) ଅସ୍ତି କଳିଙ୍ଗବିଷୟେ ରୁଦ୍ରାଙ୍ଗଦୋ ନାମ ନୃପତିଃ । ସ ଚ ଦିଗ୍‌ବିଜୟ ବ୍ୟାପାରକ୍ରମେଣ ଚନ୍ଦ୍ରଭାଗାତୀରେ ସମାବେଶିତକଟକୋ ବର୍ତ୍ତତେ ଅତ ବ୍ୟାଧାନାଂ ମୃଗାନ୍ କିଂବଦନ୍ତୀ ଶ୍ରୂୟତେ । ପଞ୍ଚତନ୍ତ୍ର ଓ ହିତୋପଦେଶ । ଏହା କଟକର ଅନ୍ତର୍ଗତ । ପୂର୍ବେ ଭଦ୍ରକର ନାମ 'ଭଦ୍ରାଙ୍ଗ' ଥିଲା । ରୁଦ୍ରାଙ୍ଗଦ କେଶରୀବଂଶର ଜଣେ ନୃପତି । ଗଙ୍ଗବଂଶୀୟ ରାଜାମାନଙ୍କର ନାମତାଲିକାରେ ରୁଦ୍ରାଙ୍ଗଦ ନାମ ଅଛି ।

କାଳରେ ଅତି ସାମାନ୍ୟ କବି (ଯେ ଅଧୁନାତ ଶିକ୍ଷାପ୍ରାପ୍ତ ନୁହନ୍ତି) ପର୍ଯ୍ୟନ୍ତ ଝଙ୍କଡ଼ବାସିନୀ ଶାରଳାଙ୍କ ସ୍ତୁତି ଦ୍ୱାରା ସ୍ୱଗ୍ରନ୍ଥରେ ମଙ୍ଗଳାଚରଣ କରି ଅଛନ୍ତି । ଏ ଯୁଗର ବରକବି ରାଧାନାଥ ମଧ୍ୟ ଏହି ଅନୁଗ୍ରହରୁ ବଞ୍ଚିତ ହୋଇ ନାହାନ୍ତି । ମହାଭାରତୀୟ କଥାରମ୍ଭରେ ସେ 'ପଙ୍କଜବାସିନୀ ଦେବି ଉତ୍କଳଭାରତି-ଶାରଳେ', ବୋଲି ମହାଭାରତବତ୍ସଳା ଶାରଳାଙ୍କୁ ଆବାହନ କରିଅଛନ୍ତି । ପଙ୍କଜବାସିନୀ ବିଶେଷଣ ଭାରତୀଙ୍କ ଠାରେ ପ୍ରଯୋଜ୍ୟ ସତ୍ୟ; କିନ୍ତୁ ଏ ଶାରଳାଙ୍କର ତାହା ନାହିଁ । ସଂସ୍କୃତରେ ବାଗ୍‌ଦେବୀଙ୍କରନାମ ଶାରଦା, * ଶାରଳା ନୁହେ । ଅନେକ ଶାରଳା ଓ ଶାରଦାଙ୍କୁ ଏକାର୍ଥବାଚକ ଶବ୍ଦ ବୋଲି ମନେ କରନ୍ତି, କିନ୍ତୁ ବ୍ୟୁତ୍ପତ୍ତି ଦେଖିଲେ ଯଥାର୍ଥରେ ତାହା ନୁହେ । ଏଠାରେ ଶାରଳା ନାମଟି ଚଣ୍ଡୀଙ୍କର ବିଶେଷଣ ହୋଇଅଛି । ସମ୍ଭବତଃ ଅଧିଷ୍ଠିତସ୍ଥାନ 'ଶରଳ'ର ନାମାନୁସାରେ ଦେବୀଙ୍କର ନାମ ଶାରଳା ହୋଇଅଛି । କବି ମଧ୍ୟ ଗ୍ରନ୍ଥର ଅନେକ ସ୍ଥାନରେ ବିଶେଷତଃ ମହାଭାରତର ଆରମ୍ଭରେ କେବଳ ଶାରଳା ନ ଲେଖି ଶାରଳା ଚଣ୍ଡୀ ଅର୍ଥାତ୍ ଶରଳବାସିନୀ ଚଣ୍ଡୀ ଲେଖିଅଛନ୍ତି । † ଅଧିଷ୍ଠିତ ସ୍ଥାନର ନାମ ଅନୁସାରେ ଅଧିଷ୍ଠାତ୍ରୀ ଦେବତାଙ୍କର ଏବଂ ଅଧିଷ୍ଠାତ୍ରୀ ଦେବତାର ଅନୁସାରେ ଅଧିଷ୍ଠିତ ସ୍ଥାନର ନାମ କରଣ ହୋଇଥିବାର ଦୃଷ୍ଟାନ୍ତ ଏ ଭାରତରେ ଭୂରି ଭୂରି ରହି ଅଛି । ଅତଏବ ଏହି ଗ୍ରାମର ନାମାନୁସାରେ ଦେବୀଙ୍କର ନାମ ଶାରଳା ହୋଇଥିବା ଖୁବ ସମ୍ଭବ । ବର୍ତ୍ତମାନ ଏହି ଗ୍ରାମ ବଡ଼ ଶାରୋଳା ବୋଲି ପରିଚିତ ଏହାର ଉପାନ୍ତବର୍ତ୍ତୀ ଜଳାଶୟ ନିକଟରେ ଅଦ୍ୟ କାଲି ଭଗ୍ନ ଇଷ୍ଟକ

---

* ଉଦିତ ଶିଶିରସଂସ୍ୟାଦ୍ର ବନ୍ଧୁରଂ ସିନ୍ଧୁପାନେ । ପୁରନ୍ଦରଶାଖା ଲେଖମ ଠଜ ମୂର୍ତ୍ତୀ । ଲଶଠ ଯଠ ଗୃହାନ୍ତା ଶାରଦା ସର୍ବ୍ବକାଳଂ । ଦଦପି ଠବଶ୍ରୁଣାନା ମଣି ପାରଂ ବ ପାଠ । ମହିମ୍ନଃସ୍ତବ ।

† ଶାରଳା ଚଣ୍ଡୀ ନାମ ଅଟଇ ସେ ଦେବୀ । ବନ୍ଦସ୍ୱେମାହେଶ୍ୱରୀ ଶାରଳା-ଚଣ୍ଡୀନାମେ । ଆ; ପ; ।

ଅଦ ମିଳୁଅଛି । ତାହା ନିକଟରେ ' ଲଣ୍ଡା ଦେଉଳ ' ନାମରେ ଗୋଟିଏ ଅତି ପ୍ରାଚୀନ ଗଣେଶ ମନ୍ଦିର ଅଛି । ଏହି ମନ୍ଦିର ମଧ୍ୟ ପୂର୍ବେ ଶୂଦ୍ରବଂଶ ଥିବା ପକ୍ଷରେ ସାକ୍ଷ ପ୍ରଦାନ କରୁଅଛି । କାରଣ ଗଣେଶ (୧) ଶୂଦ୍ରମାନଙ୍କର ଅଗ୍ରଗ୍ୟ ଦେବତା । ଶୂଦ୍ରବଂଶ ଭିନ୍ନ ଅନ୍ୟତ୍ର କେବଳ ଗଣେଶ ମନ୍ଦିର (ଶିବ ମନ୍ଦିରରୁ ପୃଥକ୍) ପ୍ରାୟ ଦେଖାଯାଏ ନାହିଁ । ଉକ୍ତ ପ୍ରାଚୀନ ମନ୍ଦିରଟି ଭଗ୍ନ ଥିଲା । ମନ୍ଦିରଟି କେବେ ହେଉ ବା କିପରି, ତାହା ଜାଣିବାର କୌଣସି ଉପାୟ ନାହିଁ । ଶ୍ରୀଯୁକ୍ତ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗ୍ରନ୍ଥରେ ଓଡ଼ିଶା ଅନ୍ତର୍ଗତ ସମସ୍ତ ମନ୍ଦିରର ବର୍ଣ୍ଣନା ଅଛି । କିନ୍ତୁ ଖାରଲା ମନ୍ଦିର କଥା କୌଣସି-ଠାରେ ଲିଖିତ ନାହିଁ । ଉଲ୍ଲେଖ ମଧ୍ୟ ଅସମ୍ଭବ; କାରଣ ବହୁ ପୂର୍ବ-କାଳରୁ ତାହାର ବିଲୋପ ସାଧନ ହୋଇଥିଲା । ମନ୍ଦିର ପାର୍ଶ୍ୱରେ ଯେପରି ବୃହତ୍ ପୁଷ୍କରିଣୀ ଖୋଦିତ ହୋଇଥିବାର ଦେଖା ଯାଉଅଛି ସେଥିରୁ ବୋଧ ହୁଏ; ତାହା ଗଙ୍ଗବଂଶୀୟ କୌଣସି ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସମ୍ଭବତଃ ସୁପ୍ରସିଦ୍ଧ ଅନଙ୍ଗଭୀମ ଦେବଙ୍କର ଏକୀର୍ତ୍ତି । (୨) କବିଙ୍କ ମୃତ୍ୟୁର ପ୍ରାୟ ଏକଶତ ବର୍ଷ ଅତୀତ ନ ହେଉଣୁ ମନ୍ଦିରଟି ବୋଧ ହୁଏ ଧୂଳିସାତ୍ ହୋଇଥିଲା । ଏ ଦୁଃସମୟ ଉତ୍କଳର ହିନ୍ଦୁ ସାଧାରଣଙ୍କୁ ସୁବିଦିତ । ହିନ୍ଦୁ କୀର୍ତ୍ତିବିଦ୍ୱେଷୀ କଳା-ପାହାଡ଼ ଯେତେବେଳେ ଉତ୍କଳାରଣ୍ୟରେ ପଶି ମତ୍ତମାତଙ୍ଗବତ୍ ହିନ୍ଦୁମନ୍ଦିରମହାଦ୍ରୁମର ଧ୍ୱଂସ ସାଧନ କଲା; ସେତେବେଳେ କ୍ଷୁଦ୍ର ଗୁଳ୍ମପ୍ରାୟ ଏହି ଦେବ ମନ୍ଦିରଟି ଭୂଲୁଣ୍ଠିତ ହୋଇଥିବ । କଥିତ ଅଛି

---

(୧) ବିପ୍ରାଣାଂ ଦୈବତଂ ଶମ୍ଭୁଃ କ୍ଷତ୍ରିୟାଣାନ୍ତୁ ମାଧବଃ । ବୈଶ୍ୟାନାନ୍ତୁ ଭବେଦ୍ବ୍ରହ୍ମା ଶୂଦ୍ରାଣାଂ ଗଣନାୟକଃ । ମନୁଃ ।

ଅଦ୍ୟାବଧି ମଧ୍ୟ ଅନେକ ଶୂଦ୍ର ଘରେ ଗଣେଶମୂର୍ତ୍ତିର ପୂଜା କରୁଥିବାର ପ୍ରମାଣ ମିଳେ । ଅଦ୍ୟାପି ମଧ୍ୟ ଦେଖାଯାଏ । ଅର୍ଦ୍ଧ ଦକ୍ଷିଣଦେଶର ଅଧିବାସୀ ପ୍ରାୟ ଗାଣପତ୍ୟ ।

(୨) ରାଜଗଡ଼ ଅନଙ୍ଗଭୀମ ଷାଠିଏ ଦେଉଳ, ଦଶଟି ସେତୁ, ଷାଠିଏ ବାପୀ, ଏକକୋଟି ମଣ୍ଡପର ଏବଂ ଏକଶ ବାଟିକ ଘାଟ ନିର୍ମାଣ କରିଥିଲେ । [illegible]

ଏହି ଦୁର୍ବୃତ୍ତ ଯବନ ଯେତେବେଳେ ଉକ୍ତ ଅଞ୍ଚଳରେ ଉପସ୍ଥିତ ହେଲା, ତେତେବେଳେ ଧର୍ମପ୍ରାଣ ହିନ୍ଦୁମାନେ ତ୍ରସ୍ତ ବ୍ୟସ୍ତ ହୋଇ ଶାରଳା ଦେବୀଙ୍କୁ ନେଇ ସନ୍ନିହିତ ଜଳାଶୟରେ ଲୁଚାଇ ରଖିଲେ । ସ୍ୱରୂପ ଅଦର୍ଶନରେ ଅତୀବ କ୍ରୋଧାନ୍ଧ ହୋଇ ମନ୍ଦିରଟି ଧୂଳିସାତ୍ କରି ସ୍ୱୀୟ ଜିଘାଂସାବୃତ୍ତି ଚରିତାର୍ଥ କରିଥିଲା । ଅନନ୍ତର କୌଣସି ହିନ୍ଦୁ ଭୂମ୍ୟଧିକାରୀ ବା ରାଜା (ସମ୍ଭବତଃ କୁଜଙ୍ଗ ରାଜା) ମୂର୍ତ୍ତିଟିକୁ ସେଠାରୁ ଆଣାଇ ପରଶୁରାମ ପ୍ରତିଷ୍ଠିତ କନକପୁରରେ ନୂତନ ମନ୍ଦିର ନିର୍ମାଣ ଓ ପୁଷ୍କରିଣୀ ଖନନ କରାଇ ଦେବୀଙ୍କର ପୁନଃ ପ୍ରତିଷ୍ଠା କରାଇଲେ ଏବଂ ଭୂବୃତ୍ତି ଖଞ୍ଜି ଦେଇ ରାଜ ବିଧିରେ ପୂଜା କରିବାର ସୁବ୍ୟବସ୍ଥା କରି ଦେଲେ । ସେହି ଦିନଠାରୁ ମନ୍ଦିରର ସେବାଦି ଯଥା ନିୟମରେ ଚାଲି ଆସୁଅଛି । ବର୍ତ୍ତମାନ ଏହାର କାର୍ଯ୍ୟ ପରିଚାଳନା ଗୋଟିଏ 'ପରିଚାଳକ ସମିତି' ଉପରେ ନିର୍ଭର କରୁଅଛି ।

ଜୀବଙ୍କ ଆୟୁର ପ୍ରଥମାର୍ଦ୍ଧ କୃଷି, ଦ୍ୟୁତ ଶଠତାରେ କଟି ଯାଇ-ଥିଲା ଏବଂ ଅଧିକାଂଶ କାଳ ଶାରଳା ସେବାରେ ଅତି ବାହିତ ହୋଇଥିଲା ବୋଲି ଏଥିପୂର୍ବେ ଉଲ୍ଲେଖ କରିଅଛୁଁ । କେବଳ ସେହି ଦେବୀଙ୍କଠାରେ ତାହାଙ୍କର ଭକ୍ତି ଯେ ଅଚଳା ଥିଲା, ଏହା ନୁହେ । ସମସ୍ତ ହିନ୍ଦୁ ଦେବ ଦେବୀଙ୍କ ପ୍ରତି ଭକ୍ତିମାନ୍ ଥିଲେ । ବାଗର୍ଥ ଲାଭ ନିମିତ୍ତ ଉତ୍କଳ ଶାରଦା ଶାରଳାଙ୍କୁ ଯେପରି ଧ୍ୟାନ କରୁଥିଲେ ଇହ ସଂସାରରୁ ମୁକ୍ତିଲାଭ ନିମିତ୍ତ ସେହିପରି ଜଗନ୍ନାଥଙ୍କୁ ସର୍ବଦା ଧ୍ୟାନ କରୁଥିଲେ । (୧) ଜଗନ୍ନାଥ ଦର୍ଶନରେ ତାହାଙ୍କର ହୃଦୟ ଶୀତଳ ହୋଇଥିଲା ଏବଂ ସେଥିରେ ସେ ଆପଣାକୁ ସଦ୍ୟୋମୁକ୍ତି ପ୍ରାପ୍ତ ମନେ-

କବିଙ୍କର ଦେହତ୍ୟାଗ ଓ ଧର୍ମ ବିଶ୍ୱାସ ।

---

(୧) ମୁକ୍ତିପ୍ରଦାନ ଦେବର ଜନ୍ମେ ଜନ୍ମେ ଦାସ । ଅପାର ମୂର୍ଖ ମୁଁ ମୋର ଭକ୍ତି ଦୃଢ଼, ମାଧବ ଚାମଡେ ମୋର ଏ ସର୍ବ ମଙ୍ଗି । ସ୍ୱ: ପ: ପୃ: ୧୮

ଥିବା ତଦୀୟ ଉକ୍ତିରୁ ପ୍ରକାଶ ପାଏ । ସେ ଅତି ନିରହଂକାର ପ୍ରକୃତି ସ୍ୱଭାବ ଥିଲେ । ସେ ଅତି ସାଧୁ ଏବଂ ଅପୂର୍ବ କବିତ୍ୱ ସମ୍ପନ୍ନ ଥିଲେହେଁ ସେଥିରେ ତାଙ୍କର କିଛି ମାତ୍ର ଅସ୍ମିତା ପ୍ରକାଶ ପାଇବାର ଦେଖା ଯାଏ ନାହିଁ ; ଏହା ତାହାଙ୍କ ଈଶ୍ୱରନିର୍ଭରତାର ସୂଚକ ନିଦର୍ଶନ । ମହାଭାରତ ରଚନାନ୍ତେ କବି କିଛିକାଳ ଶାରଳା ମନ୍ଦିରରେ ତାହାର ପ୍ରତିଷ୍ଠା କରି, ଚରମକାଳ ବୃଦ୍ଧନଦୀତୀରବର୍ତ୍ତୀ ସ୍ଥାନରେ ( ବର୍ତ୍ତମାନ ଝଙ୍କଡ଼ଅପଦାର ଏକ ଅଂଶ ) ଗୋଟିଏ ଆଶ୍ରମ ସ୍ଥାପନପୂର୍ବକ କେବଳ ଧ୍ୟାନଧାରଣାରେ କାଳାତିପାତ କରି କାଳକୁ ପ୍ରତୀକ୍ଷା କରି ରହିଲେ । ସେତେବେଳେ ସେଠା ଲୋକେ ତାହାଙ୍କୁ 'ମୁନି ଗୋସାଇଁ' ବୋଲି ଡାକୁଥିଲେ ଏବଂ ବର୍ତ୍ତମାନ ଏହି ଆଶ୍ରମଟି 'ମୁନି ଗୋସାଇଁ ମଠ' ନାମରେ ଆଖ୍ୟାତ । ଏହି ମଠରେ ଅବସ୍ଥାନ କାଳରେ ସଙ୍କଟକାଳ ଅଥବା ତାହାଙ୍କର ଲୋକାନ୍ତର ପ୍ରସ୍ଥାନରେ ମଠ କଳ୍ପ ନାହିଁ । କୋଣାର୍କ ଯାତ୍ରା ଯୋଗେ ଯେଉଁ ମାଘ ସପ୍ତମୀଟି କବିଙ୍କର ଅତି ପ୍ରିୟ ଦିବସ ଥିଲା, ସମ୍ଭବତଃ ସେହି ଯାତ୍ରା ଦିବସରେ ଉତ୍କଳର ଆଦି ମହାକବିଙ୍କର ମହାଯାତ୍ରା ହୋଇଅଛି । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ମଠରେ ପ୍ରତିବର୍ଷ ମାଘ ସପ୍ତମୀ ଦିନ ଗୋଟିଏ ମହୋତ୍ସବ ବା ମଉଚ୍ଛବ ହୁଏ । ମୁନି ଗୋସାଇଁଙ୍କ ମୃତ୍ୟୁ ଉତ୍ତାରେ ତାହାଙ୍କର ଶବଦାହ ହୋଇ ନ ଥିବାର ଅନୁମାନ ହୁଏ । ପ୍ରାୟ ବ୍ରହ୍ମଜ୍ଞାନୀ ବୋଲି (୧) ତାହାଙ୍କର ଶବ ଦାହ ନ କରି ଉକ୍ତ ମଠ ନିକଟରେ ସମାଧିସ୍ଥ କରିଥିଲେ । ଅଦ୍ୟାବଧି ସେହି ସମାଧିର ଭଗ୍ନାବଶେଷ ଏବଂ ସେଠାରେ ଗୋଟିଏ ବରଗଛ । କବିଙ୍କ ବଂଶ-

---

(୧) ବ୍ରହ୍ମ ଉପାସନା କରିଅଛନ୍ତି ଯେ ସେହି ;
ଜୀବନ୍ତ କାୟାକୁ ତହିଁରୁ କାହିଁ ପାଇ ।
ବ୍ରହ୍ମଜ୍ଞାନୀ ଅଟନ୍ତି ସେ ଶୁଦ୍ଧ ତାଙ୍କ ଦେହ,
ବହ୍ନି ନ ଛୁଇଁ ଏଥିଁ ମୁକ୍ତ ଯେ ଦେହ । ଅଶ୍ୱମେଧ ପଃ ପୃ ୬୬ ।

ଧୀବରମାନେ କହନ୍ତି ଯେ, ଏହି ବରଗଛ ମୂଳରେ ଗୋଟିଏ ସାନ 'ଜଟାଗଛ' (୧) ଥିଲା, ପ୍ରାୟ ଦଶବର୍ଷ ହେଲା ସେ ଗଛଟି ସେଠାରୁ ଅନ୍ତର୍ହିତ ହୋଇଅଛି ।

ଶ୍ରୀଦମ୍ମନ ଅଜନ୍ମବୈରାଗୀ ନୁହନ୍ତି, ଏହାର ଆଭାସ ପୂର୍ବ ପ୍ରସଙ୍ଗରେ ମିଳିଅଛି । ତେବେ ସେ ଯେ ସମ୍ପୂର୍ଣ୍ଣ ବିଷୟାସକ୍ତ ଥିଲେ ଏହା କହୁନାହୁଁ । ତାଙ୍କର ଚତୁର୍ବର୍ଗ ମଧ୍ୟରୁ ଅମ୍ଭେମାନେ ଦୁଇଟି ବର୍ଗ ଅର୍ଥାତ୍ ଅର୍ଥକାମ ସମ୍ବନ୍ଧରେ କିଛି ଆଲୋଚନା କରୁ ନାହୁଁ । କବିଙ୍କର ଅର୍ଥସ୍ପୃହା ନ ଥିଲା କିମ୍ବା ସେ ଧନବାନ ହେବାକୁ କାମନା କରୁ ନଥିଲେ, ଏହା ସହଜରେ ଅନୁମେୟ । ଏକେ ଜନ୍ମରୁ ସେ ଜଣେ ସାଧାରଣ କୃଷକର ସନ୍ତାନ ; ତହିଁରେ ପୁଣି ଦାରପରିଗ୍ରହ କରି ଅଛନ୍ତି କି ନାହିଁ ସନ୍ଦେହ । ଗ୍ରନ୍ଥରେ ଏ ସମ୍ପର୍କର ଉଲ୍ଲେଖ ନାହିଁ ; ଆଉ ଉଲ୍ଲେଖ ନଥିବା ମଧ୍ୟ ସ୍ୱାଭାବିକ । କାରଣ ମହାଭାରତ ରଚନା ପୂର୍ବରୁ କବି ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ଅବଲମ୍ବନ କରି ଥିଲେ । ତେତେବେଳେ ଗୃହ ସହିତ ତାଙ୍କର କିଛି ସମ୍ପର୍କ ନ ଥିଲା । ଆହୁରି ସନ୍ଦେହର କଥା, ସେ ସମ୍ବନ୍ଧରେ କିମ୍ବଦନ୍ତୀରୁ ମଧ୍ୟ କିଛି ଜଣା ଯାଇ ପାରୁ ନାହିଁ । କେବଳ ପ୍ରଥମ କିମ୍ବଦନ୍ତୀରୁ ପ୍ରକାଶ ପାଏ ଯେ ତାଙ୍କର ଅନେକ ଭାଇଥିଲେ । କବି ମଧ୍ୟ ଜ୍ୟେଷ୍ଠ ସହୋଦର ଥିବାର ଉଲ୍ଲେଖ କରି ଅଛନ୍ତି । ସୁତରାଂ ଗୃହସ୍ଥ ଥିଲା ବେଳେ ତାଙ୍କର ଯେ ବିବାହ ହୋଇ ନଥିବ, ଏହା ବୋଲି ଯାଇ ନ ପାରେ

କବିଙ୍କର ବଂଶଧର ।

(୧) ମୂଳରୁ ଜଟା ଉପରେ ଉଠି ଥିବାରୁ ତାହାର ନାମ 'ଜଟାଗଛ' ହୋଇଥିଲା, ଏହି ଗଛର କାଣ୍ଡ କଣ୍ଟକିତ ଏବଂ ଫୁଲ ପୁଅଁ ଫୁଲପରି କଳି ଫଳନାହିଁ କନକଲତା ଗଛ ସଙ୍ଗରେ ଏହାର ସୌସାଦୃଶ୍ୟ ଅଛି । ଏପ୍ରକାର ଗଛ ଆଉ କେଉଁଠି ପ୍ରାୟ ଦେଖା ଯାଏ ନାହିଁ । ଏହାର ପତ୍ରରେ ଅନେକ ରୋଗର ଉପଶମ ହୋଇଥିବାର ସ୍ଥାନୀୟ ଲୋକଙ୍କ ମୁଖରୁ ଶୁଣା ଯାଏ ।

ଗାର୍ହସ୍ଥ୍ୟ ପରେ ସନ୍ନ୍ୟାସ ଆଶ୍ରୟର ଦୃଷ୍ଟାନ୍ତ ଭାରତରେ ବିରଳ ନୁହେ ବରଂ ତାହା ଏକପ୍ରକାର ସାଧାରଣ ବିଧି । ଯେଉଁ ମହାତ୍ମା ମାନେ ସ୍ୱଧର୍ମ ପ୍ରବର୍ତ୍ତନଦ୍ୱାରା ଲୋକହିତ ସାଧନ କରି ଅଛନ୍ତି, ସେମାନେ ପ୍ରାୟ ଏହି ଗାର୍ହସ୍ଥ୍ୟ ଧର୍ମ ବିଯୁକ୍ତ ନୁହନ୍ତି । ତାହାର ବାହାର ଅନେକ ବୈରାଗ୍ୟ ଦେଖା ଯାଇ ଥାଏ ; କିନ୍ତୁ ଅନେକଙ୍କୁ ଏହି ସଂସାରର ଜ୍ୱାଳା ବା ଅଶାନ୍ତିର ତାଡ଼ନାରେ ବୈରାଗ୍ୟ ଆଶ୍ରୟ କରିବାକୁ ହୋଇ ଅଛି । ପୂର୍ବସଂହିତ ଶୂଦ୍ରକବି ତୁକାରାମ ଜଣେ ବିଖ୍ୟାତ ବଣିକର ପୁତ୍ର ଥିଲେ । ପାରିବାରିକ କେତେକ ଘଟନା-ରେ ଜର୍ଜରିତ ହୋଇ ସେ ବହୁଧନ ଗୃହ ବନ୍ଧୁପରିଜନାଦି ତ୍ୟାଗ ପୂର୍ବକ ସନ୍ନ୍ୟାସ ଅବଲମ୍ବନ କରିଥିଲେ । ଅମ୍ଭମାନଙ୍କର ଏହି ଶୂଦ୍ର କବି ମଧ୍ୟ ସେହିପରି ବହୁ କୁଟୁମ୍ବୋଚିତ ଦୁଃଖ ଓ ଅଶାନ୍ତିର ତାଡ଼ନାରେ ପୁତ୍ରୋ-ତ୍ପାଦନାନ୍ତେ ଗାର୍ହସ୍ଥ୍ୟର ନିଷ୍ପ୍ରୟୋଜନୀୟତା ଉପଲବ୍ଧି କରି ସତ୍ୱର ବୈରାଗ୍ୟ ଆଶ୍ରୟ କରିଥିବେ ଏଥିରେ ଆଶ୍ଚର୍ଯ୍ୟ କଣ ? ତାହା ତାଙ୍କର ସମସ୍ତ ବୃତ୍ତାନ୍ତ ଜାଣିବା ଦୂରେ ଥାଉ, ନାମ ପ୍ରାୟ ନିଶ୍ଚିତ ଭାବରେ ଜାଣିବାର କୌଣସି ଉପାୟ ନାହିଁ । ଏସମ୍ବନ୍ଧରେ କିଛି ଜାଣିବାକୁ ଚେଷ୍ଟାକଲେ ଅମ୍ଭମାନଙ୍କୁ ସେହି ଜନଶ୍ରୁତି ପ୍ରତି ଉନ୍ମୁଖ ରହିବାକୁ ହେବ । ସ୍ଥାନୀୟ ଲୋକଙ୍କ ମଧ୍ୟରୁ କେହି କେହି କହନ୍ତି, ସାରଳା-ଦାସଙ୍କ ପୂର୍ବର ନାମ 'ଘନପରିଡ଼ା' । ଏହି ଘନପରିଡ଼ା ପିତାଙ୍କ ନାମରେ ତଦାନୀନ୍ତନ ସମାଜ ଦ୍ୱାରା ଯଥେଷ୍ଟ ସମ୍ମାନିତ ହୋଇ ପରିଡ଼ା ଗୋଷ୍ଠୀରେ ସାମନ୍ତ ରୂପେ ପୂଜା ପାଇଥିବାର ନିମ୍ନୋକ୍ତ ଭାବ ବଚନରୁ ଅନୁମାନ ହୁଏ । "କଣରେ କଣ ହରିଡ଼ା, ଅଠର ଗଡ଼ରେ ଅଠର କଣ୍ଟ୍ରା ସାଆନ୍ତ ଘନପରିଡ଼ା ।" କିନ୍ତୁ ଦିନେ ପ୍ରସଙ୍ଗକ୍ରମେ 'ସାରଳାଃ ଶ୍ରୀଧର ସ୍ତୈବର୍ମଣିଃ ପସୁ'ସମସ୍ତଥା' ଉକ୍ତଙ୍କର ଜଣେ ବଂଶଧରଙ୍କ ମୁଖରୁ ଗୋଟିଏ ଶ୍ଳୋକର ଏହି ଚରଣଟିର ଆବୃତ୍ତିର ଶୁଣି ସନ୍ଦେହ ହେଲା, ଶ୍ରୀଧର ତାହାଙ୍କର ବଂଶଧର କି ? ଅନ୍ୟ

ପକ୍ଷରେ ଦେଖିଲେ ଅଦ୍ଭୁତ ଏକ ସନ୍ଦେହ ଉପସ୍ଥିତ ହୁଏ । ଭବଙ୍କର ଭ୍ରାତାଙ୍କର ନାମ 'ପରଶୁରାମ' । ଏଣେ ମୁଣ୍ଡି ଭବ ବହୁଲ୍ୟାତ୍ମକ ବୋଲି ବଂଶବଳୀରୁ ପ୍ରକାଶ ପାଉଅଛି । ତାହା ହେଲେ ଏମାନେ ଭବଙ୍କର ଭାଇ ହୋଇ ପାରନ୍ତି । ମାତ୍ର ଏ ଅନୁମାନଠାରୁ ଜନ-ଶ୍ରୁତିର ପ୍ରଭାବ ଅଧିକ ଦେଖା ଯାଉଅଛି । ଜନଶ୍ରୁତି ଅନୁସାରେ ଭବଙ୍କର ଉତ୍ତରାଧିକାରୀ ଶ୍ରୀଧର ଏବଂ ଶ୍ରୀଧରଙ୍କର ମଣି । ମଣିଙ୍କର ପୁତ୍ର ପରଶୁରାମ । ଏମାନେ ରାଜପ୍ରସାଦ ସ୍ୱରୂପ ଝୁଙ୍କଡ ପ୍ରଗନା ନିଷ୍କର ଭୋଗ କରୁଥିଲେ । କେହି କେହି କହନ୍ତି ଯେ, ସେମାନେ ଉକ୍ତ ପ୍ରଗନା ସହିତ ଗଣ୍ଡିଘୋ ହରିହରପୁର ଏବଂ ବେଣାହାର ଏହି ତିନୋଟି ସନ୍ନିହିତ ପ୍ରଗନା ମଧ୍ୟ ସେମାନଙ୍କର ଅଧିକାର-ଭୁକ୍ତଥିଲା (୧) ପରଶୁରାମଙ୍କ ଅନ୍ତେ ତଦୀୟ ପୁତ୍ର ଅର୍ଜୁନ ଉତ୍ତରା-ଧିକାରୀ ହେଲେ । କଥିତଅଛି ଏହି ପରଶୁରାମଙ୍କର ଦୁଇ ପତ୍ନୀଥିଲେ । ପ୍ରଥମ ଗର୍ଭଜାତ ଅର୍ଜୁନ ଭୂମ୍ୟଧିକାରୀ ହେବାରୁ ତଦୀୟ ବିମାତା ସ୍ୱୀୟ ପୁତ୍ର ଲାଗି କଳହ ଆରମ୍ଭ କଲେ । ଏ ଦ୍ୱନ୍ଦ୍ୱରେ ଝୁଙ୍କଡ ପ୍ରଗନା ପୂର୍ବଖଣ୍ଡି ଓ ଦକ୍ଷିଣ ଖଣ୍ଡି ଏହି ଦୁଇ ଭାଗରେ ବିଭକ୍ତ ହେଲେ । ଅର୍ଜୁନଙ୍କ ଉତ୍ତାରୁ ଅନ୍ୟ କୌଣସି ଉତ୍ତରାଧିକାରୀଙ୍କର ନାମଉକ୍ରମ ଜଣାଯାଏ ନାହିଁ । ସୁପ୍ରସିଦ୍ଧ ଭୂମ୍ୟଧିକାରୀ ହଳଧର ସାମନ୍ତରାୟ ମହାପାତ୍ର ବୋଧହୁଏ ଭବଙ୍କର ସପ୍ତମ ବା ଅଷ୍ଟମ ବଂଶଧର ହେବେ ସାମନ୍ତରାୟ ମହାପାତ୍ର ପ୍ରଭୃତି ମର୍ଯ୍ୟାଦାସୂଚକ ଉପାଧିମାନ ସୁପ୍ରସିଦ୍ଧ ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ସୃଷ୍ଟି ଏବଂ ସେହି କାଳରୁ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଉକ୍ତ ଉପାଧିମାନ ପାଇ ଆସୁଥିଲେ ।

---

(୧) ଏହି ତିନି ପ୍ରଗନା ମଧ୍ୟରେ ହରିହରପୁର ବୃହତ୍ତମ ଏବଂ ଗଣ୍ଡିଘୋ କ୍ଷୁଦ୍ରତମ । ୧୮୩୭ । ୩୮ ସାଲ ଭୂମିମାପ ଅନୁସାରେ ହରିହରପୁରର କ୍ଷେତ୍ରଫଳ ପ୍ରାୟ ୭୪ ବର୍ଗ ମାଇଲ । ଝୁଙ୍କଡର ପ୍ରାୟ ୫୭ ବର୍ଗ ମାଇଲ । ବେଣାହାରର ୪୨ ଏବଂ ଗଣ୍ଡିଘୋର ପ୍ରାୟ ୧୫ ବର୍ଗ ମାଇଲ ।

ଛଦନୂଆରେ ସଦ୍‌ବଂଶଜ ସମ୍ଭ୍ରାନ୍ତ ବଳଧର ଦୁଇଟି ସ୍ୱକୀୟୋପାଧିରେ ଭୂଷିତ ହୋଇଥିଲେ । ଏହି ଉପାଧି ଦ୍ୱୟରୁ ସୂଚିତ ହେଉଅଛି ତାହାଙ୍କର ରାଜକାର୍ଯ୍ୟରେ ବହୁ ହସ୍ତ ଥିଲା ଏବଂ ତାହାଙ୍କ ପ୍ରଦତ୍ତ ସନନ୍ଦମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ଝଭନ୍ମ ପ୍ରଗନାରେ ତାହାଙ୍କର ସ୍ୱତ୍ୱ ଥିଲା । ବର୍ତ୍ତମାନେ ତଦୀୟ ବଂଶଧରମାନେ ଗୃହ-ଅଡ୍ଡେ ସ୍ଥାନ ମାନ୍ଧ ବସିଥିଲେ ହେଁ ତାଙ୍କର ପରମ୍ପରା ଜାଣିବାର କୌଣସି ଅସୁବିଧା ନାହିଁ । ତେବେ ତନ୍ମଧ୍ୟରେ କେହି ଉପରୋକ୍ତ ରାଜକୀୟ ଉପାଧିରେ ଭୂଷିତ ନୁହନ୍ତି । ସମସ୍ତଙ୍କର ସେହି ପୂର୍ବ ପଦବୀ 'ପରିଡ଼ା' ବର୍ତ୍ତମାନ ପଡ଼ିଜା । କେବଳ ସେହି ଗୋଷ୍ଠୀରେ ଯେଉଁମାନେ ପ୍ରତିଷ୍ଠାବ୍ୟକ୍ତି, ସେହିମାନେ ଚୌଧୁରୀ ମଙ୍ଗରାଜ ପ୍ରଭୃତି ଉପାଧିରେ ବିଶେଷିତ ହୋଇଅଛନ୍ତି । ଅନେକ ମଧ୍ୟ ଏହି ସବୁ ରାଜଦତ୍ତ ଉପାଧି ବଂଶାନୁକ୍ରମେ ଭୋଗ କରି ଆସି ପରେ ନିଜର ଉତ୍କର୍ଷ ପ୍ରଦର୍ଶନାର୍ଥ ମୌଳିକ ଉପାଧି 'ପଡ଼ିଜା, କାଟି ଦେଇ ତାହା ସ୍ଥଳରେ ଚୌଧୁରୀପ୍ରଭୃତି ଯୋଗ କରି ଦେଲେଣି । (୧) ମାଧ ଯାହା କହନ୍ତି ସେମାନେ ସଗୋତ୍ର ବା ଏକ ବଂଶଜ । ଏହି ପଡ଼ିଜା ଏବଂ ଚୌଧୁରୀପ୍ରଭୃତିଙ୍କର ବାସସ୍ଥାନ ଉକ୍ତ ପ୍ରଗନା ଚତୁଷ୍ଟୟ ମଧ୍ୟରେ ଆବଦ୍ଧ । ଏମାନେ ସମସ୍ତେ ଆପଣାକୁ ଶାରଳା ଦାସଙ୍କ ବଂଶଧର ବୋଲି ପରିଚିତ କରନ୍ତି । କେବଳ ନାମତଃ ସେମାନେ ଏହି ପରିଚୟ ଦିଅନ୍ତି ନାହିଁ, ଯଥାର୍ଥରେ ସେମାନେ ଶାରଳା ଦାସଙ୍କୁ ପୂର୍ବପୁରୁଷରୂପେ ପୂଜା କରନ୍ତି । ଅଦ୍ୟାପି ସେହି ବଂଶଧରମାନଙ୍କର ବିଶେଷତଃ ଝନ୍ନୂଳପଦା ଅଧିବାସୀମାନଙ୍କର ଶ୍ରାଦ୍ଧାଦିରେ କୁଳଶ୍ରେଷ୍ଠ

---

(୧) ଏଣିକି ଅନେକେ ସାମନ୍ତସିଂହଙ୍କ ବଂଶଧର ନିଜର ଜାତିଗତ ପୃଣ୍ୟାବଂଶୀୟ ଉପାଧିଟିକୁ ପରିବର୍ତ୍ତିତକରି ସ୍ୱାଧୀନ ଭାବରେ ରାଜକୀୟ ଉପାଧି ବୋଲି ମନୋମତ ଗୋଟିଏ ଉପାଧି ବାଛିନେଇ ସ୍ୱୀୟ ନାମର ଶେଷରେ ଭୂଷିତ କଲେଣି ! କିନ୍ତୁ ସେମାନଙ୍କର ଏ କୃତ୍ରିମ ଆବରଣ କାଳର ପରିବର୍ତ୍ତନ ନିକଟରେ ଅତି ଅକିଞ୍ଚିତ୍କର ।

ଶାରଳାଦାସଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦିଆ ଯାଏ । କେବଳ ଶ୍ରାଦ୍ଧରେ ନୁହେଁ, ନୂତନ ପାବାଦରେ ମଧ୍ୟ ଶାରଳାଦେବୀ ଏବଂ ତତ୍ପୂଜ୍ୟାଙ୍କ ଶାରଳା ଦାସଙ୍କୁ ନୈବେଦ୍ୟ ଉତ୍ସର୍ଗ କରାଯାଏ । ଏମାନେ ବଂଶେ-ଷରେ ଶାରଳାଭକ୍ତ । ପ୍ରତ୍ୟେକ ନବଅନୁଷ୍ଠାନରେ ଇଷ୍ଟଦେବୀ ଶାରଳାଙ୍କର ସ୍ମରଣ ନ କଲେ ସେମାନେ ନିଃଶଙ୍କ ହୋଇ ପାରନ୍ତି ନାହିଁ । ପତ୍ରାରମ୍ଭରେ 'ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ଚରଣେ ଶରଣ' ଲେଖିବା ଯେପରି ଏଦେଶରେ ସାଧାରଣରୀତି, ଶାରଳା ବଂଶଧରମାନଙ୍କର ସେହିପରି ପତ୍ରାରମ୍ଭରେ 'ଶ୍ରୀ ପରମେଶ୍ୱରୀ (ଶାରଳା)ଙ୍କ ଚରଣେ ଶରଣ' ଲେଖିବା ସାଧାରଣ ରୀତି ହୋଇଅଛି । କେବଳ ଏତିକି ନୁହେଁ ସନନ୍ଦରେ ସୁଦ୍ଧା, 'ଶାରଳା ସନ୍ତକ' ଲେଖା ଥିବାର ସ୍ପଷ୍ଟ ଦେଖା ଯାଉଅଛି । (୧) ଏସବୁ ଦ୍ୱାରା ସେମାନେ ଶାରଳା-ସେବାକୁ ଜାତୀୟ ବୃତ୍ତି ବୋଲି ସପ୍ରମାଣ କରି ଦେଉଅଛନ୍ତି । ବର୍ତ୍ତ-ମାନ ଏହି ରୀତି ଏବଂ ସଂସ୍କାର କ୍ରମଶଃ ଊଣା ହୋଇ ଆସୁଅଛି ସତ୍ୟ, ମାତ୍ର ଏହି ମୌଳିକତା ଏହିକ୍ଷଣି ଲୋପ ପାଇ ନାହିଁ କିଂବା ଶୀଘ୍ର ଲୋପ ପାଇବାର ସମ୍ଭାବନା ନାହିଁ । ଉକ୍ତ ବଂଶଧରମାନେ ପୁଣି

---

(୧) ଝଲୁଝପଦା ବାସୀ ଶ୍ରୀଯୁକ୍ତ ଚନ୍ଦ୍ରାମଣି ପତିନାଙ୍କଠାରୁ ଖଣ୍ଡିଏ ସନନ୍ଦ ହସ୍ତଗତ ହୋଇଥିଲା ତାହାର ପ୍ରତିଲିପି ଏହି—

"ଶ୍ରୀନାବନ୍ୟାସ ଗୋସାଇଁଙ୍କି ହଳଧର ସାନ୍ତରଙ୍କର ଦେଲୁଁ ଦେବୋତ୍ତର ରୋପ, ଏ ନିମନ୍ତେ ଦେବୋତ୍ତର ରୋପ ଲେଖି ଦେଲୁଁକ ଶ୍ରୀବଳଦେବ ଠାକୁରଙ୍କ ଅମୃତି ପାଇଁ ଅମ୍ଭ ତାଲୁକର ଏତେ ଗାଁଅରୁ ଜମି ଅଣତରିଶ ମା ୬୧ । ୧୬୨ ମାଣ ଭୂଇଁ ପାଅ ଦେଲୁଁ ଏ ଜମି ଅମଳ କରିବ ।

ଏ ଜମି ଯେ ହରଣ କରିବ ଶ୍ରୀ ବଳଦେବଙ୍କ ଚରଣେ ଅପ୍ରାଧୀ ହୋଇବ— ଅମ୍ଭ ବାଳ ଗୋପାଳଙ୍କୁ ନିତି ବାଳ ସନ୍ଧ୍ୟାରେ ଆଶୀର୍ବାଦ କରୁଥିବ । ଏ ଜମି ଯାବତ୍ ଚନ୍ଦ୍ରାର୍କେ ଅମଳ କରୁଥିବ ।

ଏ ରୋପ ଶ୍ରୀ ହଳଧର ସାନ୍ତର ମହାପାତ୍ରଙ୍କର ପ୍ରମାଣ ଶ୍ରୀ ଶାରଦା ସନ୍ତକ ।" ସନନ୍ଦ ତଳେ ଏହି ସବୁ ଗ୍ରାମମାନଙ୍କର ନାମ ଥିଲା ଯଥା— ଝେଲୁଝପଦା, ଭୁଷୁଣପୁର, ଗୋବିନ୍ଦପୁର, ଶାସପୁର, ବଡ଼ଶାସନ, ଦମ୍ପାଳପୁର, ଅରଡଙ୍ଗ, କୋଠମୂଲ, ବାଘଗୋଳ, ଦଣ୍ଡକରି, ଇନ୍ଦୁପା, ଭେବୋଇ, ଏକ୍ଷସପୁର, ନଦାକଣା, କାନପୁର, ମହମୁଦାବାଦ

ଭୂଇ ଖାଞ୍ଚାରେ ବସନ୍ତି ବୋଲି କହନ୍ତି । ଏହି ଉକ୍ତ ସାମନ୍ତସିଂହ ବଂଶୀୟ, ଅନ୍ୟ ମହାରଥୀ ଉପାଧିଧାରୀ ସନ୍ତ, ହଳଧରଙ୍କର ଭ୍ରାତା ଅଛନ୍ତି । ଏହି ମହାପାତ୍ର ସାମନ୍ତସିଂହ ଉପାଧିରୁ ସେମାନଙ୍କର ଯେପରି ରାଜପୂଜ୍ୟତା ଓ ରାଜକୀୟ କୁଶଳତାର ପରିଚୟ ମିଳୁଅଛି, ମହାରଥୀ ଉପାଧିରୁ (୧) ସେହିପରି ରଣ କୁଶଳତାର ପରିଚୟ ମିଳୁ ଅଛି, ବୋଧ ହୁଏ ଏହି ବଂଶଧର ମାନେ ରାଜସମ୍ମାନର ମର୍ଯ୍ୟାଦା ରକ୍ଷା ନିମିତ୍ତ ନିଜେ ରାଜନ୍ୟୋଚିତ ଧନୁର୍ବେଦାଦିର ଶିକ୍ଷା କରୁଥିଲେ । ସେମାନଙ୍କ ଅଧସ୍ତନ ପୁରୁଷ ସ୍ୱୟଂ କବି ତହିଁରେ ଅପାରଗ ନ ଥିଲେ ଏହା ତାଙ୍କର ମହାଭାରତ ପାଠରୁ ଅନୁମାନ କରାଯାଏ । ସେ ଯାହା ହେଉ, ବର୍ତ୍ତମାନେ ଏମାନଙ୍କ ଆଚାର ବ୍ୟବହାର ଏବଂ ସାମାଜିକ ରୀତି ନୀତି ସବୁ କରଣଙ୍କ ସହିତ ସମାନ । ଅନ୍ୟାନ୍ୟ କରଣଙ୍କ ସହିତ ଏମାନଙ୍କର ବୈବାହିକ ସମ୍ବନ୍ଧ ହେଉଅଛି । ତଥାପି ଏମାନେ ଆଜି ଯାଏ ଶୂଦ୍ରାପବାଦ ରୂପ ଜୁଗୁପ୍ସାବ୍ୟଞ୍ଜକ ସ୍ୱରୂପାଖ୍ୟାନରୁ (୨) ମୁକ୍ତିଲାଭ କରି ନାହାନ୍ତି । "ଜନାନନେ . କଃ କରମର୍ପୟିଷ୍ୟତି ? ସେଥି ପାଇଁ ଲେଖକଙ୍କ ମୁହଁରେ ହାତ ଦେବ କିଏ ?

---

ଲିଡ଼୍ୟାଡ଼ । ତାଲୁକା, କଥାଟି ୫୨ ଅନୁମିତ ହେଉଅଛି—ହଣ୍ଟର ମବଦ୍ୟାଙ୍କ ଶାସନ ସମୟରେ ବିଦ୍ୟମାନ ଥିଲେ, କାରଣ ତାଲୁକ କଥାଟି ମର୍ହାଟ୍ଟାଙ୍କ ସମୟରେ ବିଶେଷରେ ପ୍ରଚଳିତ ବୋଲି ହଣ୍ଟର ସାହେବ ନିର୍ଦ୍ଦେଶ କରିଅଛନ୍ତି । ଯଥା—'ଚୌଧୁରୀ ତାଲୁକଦାର Chaudhury talukdar' II. P. 130.)

(୧) Mahapatra—Great minister.
Maharatha—Gceat warrior.

Santra—Border chief (Statistical accounts of Bengal. Vol. XVIII P. 129)

( ୨ ) ଜାତି ନ ଜାଣି ଏହି ଶୂଦ୍ର ଶବ୍ଦ ଉଚ୍ଚାରଣରେ ଏଠି ପଣ୍ଡିତମାନେ ବେ ମର୍ମାହତ ହୁଅନ୍ତି । ପୂର୍ବେ ଯାହା ଥାଉ, ବର୍ତ୍ତମାନ ଯେତେବେଳେ ସମାଜରେ ଉଚ୍ଚଆସନ ଲାଭ କରିଅଛନ୍ତି, ସେତେବେଳେ ସେମାନଙ୍କର ସେଥି ପାଇଁ ଆପଣାକୁ ଧନ୍ୟ ମନେ କରି ଆନନ୍ଦ ପ୍ରକାଶ କରିବା ଉଚିତ । ତାହା ନ କରିବା ଦ୍ୱାରା ସେମାନେ ବରଂ ଜୁଗୁପ୍ସାକୁ ପ୍ରଶ୍ରୟ ଦିଅନ୍ତି ।

# ମହାଭାରତ ।

ଭକ୍ତକବି ଜଗନ୍ନାଥଙ୍କ ଶ୍ରୀମଦ୍ ଭାଗବତ ଯେପରି ଉତ୍କଳର ଘରେ ଘରେ ପଠିତ ଏବଂ ସର୍ବଜନାଦୃତ,

ପ୍ରତିପାଦିତ ବିଷୟ

ଆଦିକବି ଶାରଳା ଦାସଙ୍କ ବିରାଟ ମହାଭାରତ ମଧ୍ୟ ସେହିପରି ଗ୍ରାମେ ଗ୍ରାମେ ପଠିତ ଏବଂ ସୁପ୍ରୀତ ବିଗତ ପଞ୍ଚଶତାବ୍ଦୀ ମଧ୍ୟରେ କେବଳ ତାଳପତ୍ର ଛଡ଼ା ସର୍ବତ୍ର ଗ୍ରନ୍ଥ ପ୍ରଚାରର ତାଦୃଶ ସୁବିଧା ନଥିଲେହେଁ ଏହା ଉତ୍କଳର ସବୁ ଅଞ୍ଚଳରେ ପରିବ୍ୟାପ୍ତ ହୋଇଅଛି । ଗଡ଼ଜାତରେ ଏହା ରାଜା କୃଷ୍ଣସିଂହଙ୍କ (୧) କୃତ ମହାଭାରତ ପରି ସୁପ୍ରଚଳିତ ନୁହେ ବୋଲି ଆମ୍ଭେମାନେ ଶୁଣି ଥାଉଁ ; କିନ୍ତୁ ସେ ମହାଭାରତ ରଚନା ପୂର୍ବରୁ ଅବଶ୍ୟ ଏହି ମହା-ଭାରତ ସେ ସବୁ ସ୍ଥଳରେ ପ୍ରଚଳିତ ହୋଇଥିବ । ପ୍ରାୟ ସିଂହଙ୍କ ମହାଭାରତ ଉତ୍ପରେ ଏହାର ପ୍ରଚାର କ୍ରମଶଃ ଏଣିକି ସେ ସବୁ ଅଞ୍ଚଳରେ ଊଣା ହୋଇଅଛି । ତଥାପି ସମ୍ବଲପୁର ପ୍ରଭୃତି ସୁଦୂରବର୍ତ୍ତୀ ଉତ୍କଳଭାଷୀ ଜନପଦରେ ଏହାର ସୁପ୍ରଚଳନ ଥିବାର ପ୍ରମାଣ ପାଉଁ ।

---

(୧) କୃଷ୍ଣସିଂହ ମହାଭାରତ ଅନୁବାଦକ । ସେ ଧରାକୋଟ ରାଜ୍ୟର ଅଧିପତି ଥିଲେ । ସେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ମହାଭାରତ ରଚନା ଆରମ୍ଭ କରିଥିଲେ । ଶକାବ୍ଦ ୧୭୦୫ ବା ୧୭୮୩ ଖ୍ରୀଷ୍ଟାବ୍ଦରେ ବିରାଟ ପର୍ବର ରଚନା ସମାପ୍ତ ହୋଇଥିବାର ତାଙ୍କ ଉକ୍ତିରୁ ପ୍ରମାଣିତ ହୁଏ । ଅତଏବ ତାଙ୍କ ମହାଭାରତ ରଚିତ ହେବାର ଅନ୍ୟୁନ ପ୍ରାୟ ୧୩୦ ବର୍ଷ ହେବ । "ଏକାଦଶ ପାଞ୍ଚ ଉଦଧି ସତରଣ ଗଣିବାରେ ଅବ୍ଦ ହୋଇ-ଅଛି ଶେଷ । ରାମଚନ୍ଦ୍ର ସିଂହ ରାଜାଙ୍କର ନାତି । ନୀଳାଦ୍ରି ସିଂହଙ୍କର ଅଟେ ମୁଁ ସୁତ ଧରାକୋଟ ରାଜ୍ୟରେ ହୋଇ କରି ରାଜା । ଅଧମ କଥାରେ ବୁଝାଇଲି ମଜ୍ଜା ।—ବିରାଟପର୍ବ ।"

ବର୍ତ୍ତମାନେ ପ୍ରବୀଣ ପ୍ରକାଶିକା କୋମ୍ପାନୀଙ୍କ ପ୍ରସାଦରୁ ଏହି ମହାଭାରତର ଅଷ୍ଟାଦଶ ପର୍ବ ମୁଦ୍ରିତ ହୋଇ ପାଠକ ସାଧାରଣଙ୍କର ଅନାୟାସ ଲଭ୍ୟ ହୋଇଅଛି । ଅଜକୁ ପ୍ରାୟ ଦଶବର୍ଷ ହେଲା ଉକ୍ତ ପ୍ରକାଶକମଣ୍ଡଳୀ ମହାଭାରତର ମୁଦ୍ରଣ ଆରମ୍ଭ କରି ପର୍ବଶଃ ସମସ୍ତ ପ୍ରକାଶ କଲେ । ଏଥିପାଇଁ ସେମାନେ ଉତ୍କଳର ପାଠକସାଧାରଣଙ୍କର ଅବଶ୍ୟ ପ୍ରଶଂସାଭାଜନ । ତଥାପି ଆମ୍ଭେମାନେ ଏ ପ୍ରଶଂସାରେ ସମ୍ପୂର୍ଣ୍ଣ ମୁକ୍ତକଣ୍ଠ ନ ହୋଇ କିଞ୍ଚିତ୍ କୁଣ୍ଠକଣ୍ଠ ହେଉଅଛୁଁ । ପ୍ରକାଶକଗଣ ସର୍ବ ପ୍ରଥମେ ଖଣ୍ଡିଏ ପ୍ରାଚୀନ ବିରାଟଗ୍ରନ୍ଥ ପ୍ରକାଶ କଲେ, ଏହା ଅବଶ୍ୟ ଅତି ଆନନ୍ଦର କଥା, କିନ୍ତୁ ସେଥିରେ ଥିବା ଦୋଷ ବା ଅଶୁଦ୍ଧିର ନିରାକରଣ ପ୍ରତି ତୀକ୍ଷ୍ଣ ଦୃଷ୍ଟି ନ ରଖି ତାହାକୁ ଭ୍ରମପ୍ରମାଦ-ସଙ୍କୁଳ ଏବଂ ସ୍ଥାନେ୨ ପରିବର୍ତ୍ତନାଦିଦ୍ୱାରା ବିକୃତ କରିଅଛନ୍ତି, ଏହା ଅତୀବ ଆକ୍ଷେପର ବିଷୟ । କୋମ୍ପାନୀଙ୍କର ଏ ତ୍ରୁଟି ଉପେକ୍ଷଣୀୟ ନୁହେ । ସେ ଯାହା ହେଉ ବର୍ତ୍ତମାନ ଆମ୍ଭେମାନେ ଏହି ନବ ପ୍ରକାଶିତ ମହାଭାରତ ଆଲୋଚନା କରିବା ପୂର୍ବରୁ ବିଜ୍ଞପାଠକ-ସାଧାରଣଙ୍କ ନିକଟରେ ଏହି ନିବେଦନ କରୁଅଛୁଁ ଯେ, ସେମାନେ କବିଙ୍କ ପ୍ରତି ଲକ୍ଷ୍ୟ ନ ରଖି ବିଷୟ ପ୍ରତି କେବଳ ତୀକ୍ଷ୍ଣଦୃଷ୍ଟି ରଖିବେ । ବକ୍ଷ୍ୟମାଣ କଥାମାନ କବିଙ୍କର ନିନ୍ଦା ବା ସ୍ତୁତିବାଦ ନୁହେ କିଂବା ପୂଜନୀୟ ପ୍ରାଚୀନ କବିଙ୍କ ପ୍ରତି ଆକ୍ରମଣ ନୁହେ । ଯାହା ସତ୍ୟ ବା ଯଥାର୍ଥ, କେବଳ ତାହା ଏଥିରେ ଯଥାଶକ୍ତି ପ୍ରକାଶ କରି ଯାଉଅଛି । ତଦ୍ଦ୍ୱାରା ଯଦି କେଉଁଠି କବିଙ୍କର ଯଶୋହାନି ହୁଏ, ତେବେ ତାହା ସତ୍ୟ ଅନୁରୋଧରେ ସହିବାକୁ ହେବ ।

ସର୍ବାଦୌ ଏହି ମହାଭାରତ ସଂସ୍କୃତ ବା ମୂଳ ମହାଭାରତର ପର୍ବାନୁକ୍ରମରେ ସମ୍ପୂର୍ଣ୍ଣ ଲିଖିତ ନୁହେ । ଯେଉଁଠି ପାର୍ଥକ୍ୟ ଲକ୍ଷିତ ହୁଏ, ତାହା ନିମ୍ନୋଦ୍ଧୃତ ତାଲିକାରେ ପ୍ରକାଶିତ ହେଲା ।

| ସଂସ୍କୃତ | ଓଡ଼ିଆ |
|---|---|
| ୧ ଆଦିପର୍ବ | ୧ ଆଦିପର୍ବ |
| ୨ ସଭାପର୍ବ | ୨ ମଧ୍ୟପର୍ବ |
| ୩ ବନପର୍ବ | ୩ ସଭାପର୍ବ |
| ୪ ବିରାଟପର୍ବ | ୪ ବନପର୍ବ |
| ୫ ଉଦ୍ୟୋଗପର୍ବ | ୫ ବିରାଟପର୍ବ |
| ୬ ଭୀଷ୍ମପର୍ବ | ୬ ଉଦ୍ୟୋଗପର୍ବ |
| ୭ ଦ୍ରୋଣପର୍ବ | ୭ ଭୀଷ୍ମପର୍ବ |
| ୮ କର୍ଣ୍ଣପର୍ବ | ୮ ଦ୍ରୋଣପର୍ବ |
| ୯ ଶଲ୍ୟପର୍ବ | ୯ କର୍ଣ୍ଣପର୍ବ |
| ୧୦ ସୌପ୍ତିକପର୍ବ | ୧୦ ଶଲ୍ୟପର୍ବ |
| ୧୧ ସ୍ତ୍ରୀପର୍ବ | ୧୧ ଗଦାପର୍ବ |
| ୧୨ ଶାନ୍ତିପର୍ବ | ୧୨ ତାଇଁଶିକା ବା ଐଷିକପର୍ବ |
| ୧୩ ଅନୁଶାସନପର୍ବ | ୧୩ ନାରୀପର୍ବ |
| ୧୪ ଅଶ୍ୱମେଧପର୍ବ | ୧୪ ଶାନ୍ତିପର୍ବ |
| ୧୫ ଆଶ୍ରମିକପର୍ବ | ୧୫ ଆଶ୍ରମିକପର୍ବ |
| ୧୬ ମୌଷଲପର୍ବ | ୧୬ ଅଶ୍ୱମେଧପର୍ବ |
| ୧୭ ମହାପ୍ରସ୍ଥାନିକପର୍ବ | ୧୭ ମୂଷଲୀପର୍ବ |
| ୧୮ ସ୍ୱର୍ଗାରୋହଣପର୍ବ | ୧୮ ସ୍ୱର୍ଗାରୋହଣପର୍ବ |

ଉଲ୍ଲିଖିତ ତାଲିକାରୁ ଆମ୍ଭେମାନେ ମୂଳସହିତ ନାମ ଓ କ୍ରମର ଯାହା ପ୍ରଭେଦ ଦେଖୁଅଛୁଁ, କେବଳ ତେତିକ ନୁହେ । ପର୍ବ ବର୍ଣ୍ଣିତ ବିଷୟ ଆଲୋଚନା କଲେ ଏଥିରେ ମୂଳ ମହାଭାରତର ଯଥେଷ୍ଟ ବ୍ୟତିକ୍ରମ ଦେଖାଯାଏ । ମୂଳ ତୁଳନାରେ ଏଥିର ବର୍ଣ୍ଣନା କାହିଁ ଅତି ସଂକ୍ଷିପ୍ତ, କାହିଁ ବା ଅତି ପ୍ରସାରିତ; କାହିଁ କାହିଁ ପରିବର୍ତ୍ତିତ ଓ କଳ୍ପନା ରଞ୍ଜିତ, କାହିଁ କାହିଁ ବା ସ୍ଥାନାନ୍ତରିତ । କୌତୂ-

ହେଲ ପରିପୂର୍ଣ ପାଠକ ସାଧାରଣଙ୍କୁ ନିମ୍ନରେ ତାହାର ଟିକିଏ ଆଭାସ ଦେବାକୁ ଚେଷ୍ଟା କରୁଅଛୁଁ ।

୧—(ଆଦିପର୍ବ) ସଂସ୍କୃତର ଆଦିପର୍ବ ଏଥିରେ ଆଦି ଓ ମଧ୍ୟ ଦୁଇ ଭାଗରେ ବିଭକ୍ତ । ଅନୁକ୍ରମଣ ବା ଅଂଶାବତରଣଠାରୁ ସ୍ୱୟମ୍ବର ଓ ରାଜ୍ୟଲାଭ ପର୍ଯ୍ୟନ୍ତ ବର୍ଣ୍ଣିତ ବିଷୟ ପ୍ରଥମ ପର୍ବର ଅନ୍ତର୍ଗତ ଆଦିପର୍ବାନ୍ତର୍ଭୁକ୍ତ ଅର୍ଜୁନବନବାସ, ସୁଭଦ୍ରା ହରଣ, ଖାଣ୍ଡବଦାହ ଓ ମୟଦର୍ଶନାଦି ମଧ୍ୟପର୍ବର ପ୍ରତିପାଦିତ ବିଷୟ । କବିଙ୍କର ଏହି ଦୁଇଟି ପର୍ବ ଅନ୍ୟାନ୍ୟ ପର୍ବର ଆକାର ତୁଳନାରେ ଅଯଥା ବୃଦ୍ଧିଲାଭ କରିଅଛି । ତଥାପି ସଂସ୍କୃତ ଆଦିପର୍ବର ସମସ୍ତ ବିଷୟ ଏ ଦୁଇଟିରେ ସ୍ଥାନ ପାଇ ପାରି ନାହିଁ । ମୂଳ ଗ୍ରନ୍ଥର ଅନେକ ପ୍ରସଙ୍ଗ ଏଥିରେ ପରିତ୍ୟକ୍ତ ଏବଂ କେତେକ ଅବାନ୍ତର କଥା ଅଯଥା ବିସ୍ତୃତ । ଦ୍ରୋଣଜନ୍ମ କର୍ଣ୍ଣଜନ୍ମ ପ୍ରଭୃତି ବର୍ଣ୍ଣନା ବଡ଼ ଅଶ୍ଳୀଳ ଏବଂ ଅସ୍ୱାଭାବିକ । ମୂଳ ଗ୍ରନ୍ଥରେ ଏପ୍ରକାର ବର୍ଣ୍ଣନାର ସତ୍ତା ନାହିଁ । ଭୀମ ଜନ୍ମର ଅଯଥା ବିସ୍ତାର କବିଙ୍କର କପୋଳକଳ୍ପିତ ପରି ବୋଧ ହୁଏ । ଅନେକ ସ୍ଥଳରେ କବି ଏହିପରି ସ୍ୱକପୋଳକଳ୍ପିତ ପରି ଗଳ୍ପର ଅବତାରଣାଦ୍ୱାରା ଏବଂ ଏକଥାକୁ ଭିନ୍ନ ସ୍ଥଳରେ ଭିନ୍ନ ଯୁଗରେ ପୁନଃ ପ୍ରକାଶ କରିବା ଦ୍ୱାରା ଗ୍ରନ୍ଥର ଅଯଥା ବୃଦ୍ଧି କରିଅଛନ୍ତି । ଅଥଚ ଅନେକ ଉଲ୍ଲେଖ ଯୋଗ୍ୟ ବିଷୟ ଏକାବେଳକେ ବର୍ଜନ କରିଅଛନ୍ତି । ଦ୍ରୌପଦୀ ସ୍ୱୟମ୍ବରରେ ଲକ୍ଷ୍ୟଭେଦର ବର୍ଣ୍ଣନା [ ୧ ] କବି କେଡ଼େ ବିସ୍ତୃତ ଏବଂ ଅମୂଳକ କରିଅଛନ୍ତି; ତାହା ପାଠକେ ଥରେ ପୁସ୍ତକ ଉଦ୍‌ଘାଟନ କଲେ ଜାଣି ପାରିବେ । ମାତ୍ର ଏ ପ୍ରସଙ୍ଗ ସଂସ୍କୃତରେ ଦୁଇ ତିନୋଟି ଶ୍ଲୋକମାତ୍ର, ଧୃଷ୍ଟଦ୍ୟୁମ୍ନ ଉପସ୍ଥିତ ରାଜନ୍ୟ ମଣ୍ଡଳୀଙ୍କ ସମ୍ମୁଖରେ ଜଣାଇଲେ;—

(୧) ଏହି ଦୀର୍ଘ ବର୍ଣ୍ଣନାରୁ ଓଡ଼ିଆର ଲକ୍ଷ୍ୟଭେଦ ପ୍ରଥାର ଅବତାରଣା ହୋଇଅଛି ।

ଇଦଂ ଧନୁର୍ଲକ୍ଷ୍ୟ ମିମେ ଚ ବାଣାଃ
ଶୃଣ୍ୱନ୍ତୁ ମେ ଭୂପତୟଃ ସମେତାଃ ।
ଛିଦ୍ରେଣ ଯନ୍ତ୍ରସ୍ୟ ସମର୍ପୟଧ୍ୱଂ
ଶରୈଃ ଶିତୈର୍ବ୍ୟୋମଚରୈର୍ଦଶାର୍ଦ୍ଧୈଃ ।
ଏତନ୍ମହତ୍ କର୍ମ କରୋତି ଯୋ ବୈ
କୁଲେନ ରୂପେଣ ବଲେନ ଯୁକ୍ତଃ ।
ତସ୍ୟାଦ୍ୟ ଭାର୍ଯ୍ୟା ଭଗିନୀ ମମେୟଂ

କୃଷ୍ଣା ଭବିତ୍ରୀ ନ ମୃଷା ବ୍ରବୀମି, ଆଃ ପଃ ୮୫ ଅଧ୍ୟାୟ । ବଙ୍ଗବାସୀସ୍ଥ ମଧ୍ୟ ଠିକ୍ ଏହି କଥା ଲେଖିଅଛନ୍ତି (୧) । ଏପ୍ରକାର ପ୍ରସଙ୍ଗ ବ୍ୟତୀତ କେବଳ ପ୍ରତ୍ୟେକ ଜନ୍ମ ଯାତ୍ରାଦି ଶୁଭାନୁଷ୍ଠାନରେ ଶୁଭଦିନ ତାରା ଚନ୍ଦ୍ରାଦିର ଯୋଗ କରିଅଛନ୍ତି, କିନ୍ତୁ ସେ ସୁଦ୍ଧା ସର୍ବତ୍ର ଜ୍ୟୋତିଷ ଶାସ୍ତ୍ରସମ୍ମତ ଥିଲା ପରି ବୋଧ ହେଉ ନାହିଁ । ମୂଳ ସହିତ ତାହାର ମେଳ ନ ଥିବାରୁ ସ୍ୱତଃ ସଂଶୟ ଜନ୍ମେ । ଅଧିକ ଦୃଷ୍ଟାନ୍ତର ପ୍ରୟୋଜନ ନାହିଁ; ଯୁଧିଷ୍ଠିରଙ୍କ ଜନ୍ମ ସ୍ପଷ୍ଟରେ କରି ଲେଖିଅଛନ୍ତି ;—

ବୈଶାଖ ଶୁକ୍ଳ ପ୍ରତିପଦା ଯେ ଚନ୍ଦ୍ରବାର
ଦ୍ୱିତୀ ନକ୍ଷତ୍ର ମେଷ ରାଶି ସେ ଦିନର ।
ବୈଧୃତି ନାମେ କରଣ ପ୍ରୀତିନାମେ ଯୋଗ
ମେଷ ସଂକ୍ରାନ୍ତିକି ଉତ୍ତରାୟଣ ଦିନ ଭୋଗ ।

---

(୧) ଦ୍ରୋଣ ଧନୁ କୈଲା ଯାହା କେହୁ ନାହିଁ ଦେଖେ
ଶୂନ୍ୟେତେ ରାଖିଲ ଧନୁ ଅପରୂପ ବେଶେ ।
ମଧ୍ୟପଥେ ଯନ୍ତ୍ର ଥୁଇଲ ମନ୍ତ୍ର ବଳତରେ
ପଞ୍ଚଶର ସହ ଧନୁ ଥୁଇଲ ସତ୍ୱରେ ।
ଏହି ଧନୁରେ ଏହି ପଞ୍ଚଶର ପଥେ ।
ଯେ ଭେଦିବେ ଲକ୍ଷ୍ୟ କନ୍ୟା ଲଭିବେ ତାହାତେ ।

ସମ୍ପୂର୍ଣ୍ଣ ହୋଇଅଛି ଯେ ସାତ ପଢ଼ ସାଢ଼···ପୃ ୬୮ ।

କିନ୍ତୁ ସଂସ୍କୃତରେ ଏ ସ୍ଥଳରେ କଣ ଅଛି ଦେଖନ୍ତୁ ;—

ଐନ୍ଦ୍ରେ ଚନ୍ଦ୍ରମା ସଂଯୁକ୍ତେ ମୁହୂର୍ତ୍ତେଽଭିଜିତେଽଷ୍ଟମେ
ଦିବାମଧ୍ୟଗତେ ସୂର୍ଯ୍ୟେ ତିଥୌ ପୂର୍ଣ୍ଣେଽତିପୂଜିତେ ।
ସମୃଦ୍ଧ ଯଶସଂ କୁନ୍ତୀ ସୁଷାବ ପ୍ରବରଂ ସୁତଂ ।

ଆଃ ପଃ ୧୩ ଅଧ୍ୟାୟ

ଅର୍ଥାତ୍ କୁନ୍ତୀ ପୂର୍ଣ୍ଣତିଥି (ପଞ୍ଚମୀ)ରେ ସୂର୍ଯ୍ୟ ମଧ୍ୟଗତ (ତୁଳାରାଶିସ୍ଥ) ଥିବା ସମୟରେ ଦିବସର ଅଷ୍ଟମ ମୁହୂର୍ତ୍ତରେ-ଐନ୍ଦ୍ର ବା ଜ୍ୟେଷ୍ଠା ନକ୍ଷତ୍ରରେ ଯଶସ୍ୱୀପୁତ୍ର ପ୍ରସବ କରିଥିଲେ । ମୂଳ କବିଙ୍କର ଆଶ୍ୱିନ ଶୁକ୍ଳପଞ୍ଚମୀ ସ୍ଥଳରେ ଏ କବିଙ୍କର ବୈଶାଖ ଶୁକ୍ଳ ପ୍ରତିପଦା କିପରି ସଙ୍ଗତ ? ଅଉ ସଂସ୍କୃତର ଏହି ଜନ୍ମ ତିଥି ଓ ଯୋଗ ଅତି ଦୁର୍ଲ୍ଲଭ ।

୨ ସଭାପର୍ବ ।—ଏହି ପର୍ବରେ ରାଜସୂୟ ପ୍ରସ୍ତାବ, ଯଜ୍ଞାନୁଷ୍ଠାନ, ଜରାସନ୍ଧବଧ, ଭୀମାର୍ଜ୍ଜୁନାଦିଙ୍କର ଦିଗ୍‌ବିଜୟ, ଶିଶୁପାଳବଧ, ଏବଂ ଦ୍ୟୂତକ୍ରୀଡ଼ାଦିର କଥା ବର୍ଣ୍ଣିତ ଅଛି । ପୁଣ୍ୟଶ୍ଳୋକ ଯୁଦ୍ଧ ଓ ଜାନୁଦଣ୍ଡ ପ୍ରଭୃତିଙ୍କର ଯୁଦ୍ଧ ବର୍ଣ୍ଣନା ଏବଂ କାମାକ୍ଷୀଙ୍କଠାରୁ ଭୀମର ଅପୂର୍ବ ପାଶୁପତ ଶକ୍ତି ଲାଭର ବର୍ଣ୍ଣନା ମୂଳଗ୍ରନ୍ଥରେ ଦେଖା ଯାଏ ନାହିଁ । ମାତ୍ର କବିଙ୍କର ଏଥିରେ ବୈଲକ୍ଷଣ୍ୟ ପ୍ରତିବିମ୍ବିତ ହୋଇଅଛି । ଏହି ପର୍ବାନ୍ତର୍ଗତ ଭୀମ ଜରାସନ୍ଧଯୁଦ୍ଧ ବର୍ଣ୍ଣନା ବୀରରସାତ୍ମକ । ୧୦ ସର୍ଗେ୨ ଉଭୟ ବୀରର ରୁଦ୍ର ମୂର୍ତ୍ତି ପାଠକର ମାନସ ପ୍ରତ୍ୟକ୍ଷ ହୁଏ । କବିଙ୍କର ଏହି ଜରାସନ୍ଧପୁରପ୍ରବେଶ ବର୍ଣ୍ଣନା ମୂଳବର୍ଣ୍ଣନାରୁ ଅନେକାଂଶରେ ପୃଥକ୍ । ସଂସ୍କୃତ ସଭାପର୍ବର ଏକବିଂଶ ଅଧ୍ୟାୟର [୧୯ଶ ଠାରୁ ୨୦ଶ] ଶ୍ଳୋକ କତିପୟରୁ ଜଣାଯାଏ ଯେ କୃଷ୍ଣାର୍ଜ୍ଜୁନ ଏବଂ ଭୀମ ପୁର ପ୍ରବେଶ କାଳରେ ପ୍ରଥମେ ଗିରିବ୍ରଜ ଓ ଚୈତ୍ୟକ [ବଡ଼ବୃକ୍ଷ] ଅତିକ୍ରମ କରି ମାଂସାଦ ବୃଷଭର [ଦୈତ୍ୟ-ବିଶେଷ] ଚର୍ମନିର୍ମିତ କଠୋରନାଦ ଭେରୀତ୍ରୟକୁ ଖଣ୍ଡ ଖଣ୍ଡ କରି

ମରାଇଥିଲେ । ତଦନନ୍ତର ପଥ ମଧ୍ୟରେ ଗନ୍ଧମାଲ୍ୟାର୍ଚ୍ଚିତ ଶୃଙ୍ଗକୁ ଦେଖିବାକ୍ଷଣି ତାହାକୁ ବିଚୂର୍ଣ୍ଣ କରି ଜରାସନ୍ଧର ହୋମଶାଳା ଅଭିମୁଖରେ ପ୍ରସ୍ଥାନ କଲେ । କିନ୍ତୁ ଏ ସ୍ଥଳରେ କବିଙ୍କର ବର୍ଣ୍ଣନା ଭିନ୍ନ ପ୍ରକାର ତାହା ଏହି ଯେ, ଶିବଙ୍କଠାରୁ ଜରାସନ୍ଧବଧର ଭେଦ ପାଇଁ କୃଷ୍ଣ, ଅର୍ଜ୍ଜୁନ, ଭୀମ ଓ ସହଦେବ ଚାରିଜଣ ଚାରି ଦ୍ୱାରରେ ପ୍ରବେଶ କରି ଯଥାକ୍ରମେ ଗର୍ଦ୍ଦଭ, ଶିମୁଳି ଗଛ, ଭେରୀ ଏବଂ ଯୁବରାଜଙ୍କୁ ଅତିକ୍ରମ କରି ଲକ୍ଷ୍ୟ ସ୍ଥାନକୁ ଯାଇଥିଲେ । ଏହି ସ୍ଥଳରେ କୃଷ୍ଣ 'ଗଧପାଦ ଧରି ଥିବାର' ବର୍ଣ୍ଣନା ଅଛି—ଏବ ଏହି କଥା ବର୍ତ୍ତମାନ "ଅସମୟ ବେଳେ ଗଧପାଦ ଧରିବାକୁ ହୁଏ" ଗୋଟିଏ ଓଡ଼ିଆ ପ୍ରବଚନରେ ପରିଣତ ହୋଇଅଛି ।

ଙ—(ବନପର୍ବ)—ପାଣ୍ଡବମାନଙ୍କର ଅରଣ୍ୟଯାତ୍ରା, କିର୍ମ୍ମୀରବଧ, କିରାତାର୍ଜ୍ଜୁନସମ୍ବାଦ, ଅର୍ଜ୍ଜୁନର ଇନ୍ଦ୍ରପ୍ରସ୍ଥ ଗମନ, ନଳୋପାଖ୍ୟାନ, ତୀର୍ଥଯାତ୍ରା, ଯକ୍ଷଯୁଦ୍ଧ, ମାର୍କଣ୍ଡେୟ ସମାସ୍ୟା, ଦ୍ରୌପଦୀ ସତ୍ୟଭାମା-ସମ୍ବାଦ, ଘୋଷଯାତ୍ରା, ଦୁର୍ବାସାଗମନ ଜୟଦ୍ରଥକୃତ ଦ୍ରୌପଦୀ ହରଣ, ସୂର୍ଯ୍ୟଙ୍କଠାରୁ କର୍ଣ୍ଣର କୁଣ୍ଡଳାହରଣ ବୃକବଧ ପ୍ରଭୃତି ଏହି ପର୍ବର ବର୍ଣ୍ଣିତ ବିଷୟ । ଏଥି ମଧ୍ୟରୁ ତୀର୍ଥଯାତ୍ରା, ନଳୋପାଖ୍ୟାନ ଏବ ଦ୍ରୌପଦୀ ହରଣର ବର୍ଣ୍ଣନା ମୂଳ ତୁଳନାରେ ଅତି ସଂକ୍ଷିପ୍ତ, ଅନ୍ୟର ମଧ୍ୟ ଯଥା ସ୍ଥାନରେ ସନ୍ନିବେଶିତ ହୋଇ ନାହିଁ । ତାହା ବ୍ୟତୀତ ମୂଳପର୍ବର ଦୁଇଟି ପ୍ରସିଦ୍ଧ ଚରିତ ଏଥିରେ ବର୍ଣ୍ଣିତ ନାହିଁ । ଯଥା—ସୁକନ୍ୟା ଚରିତ ଏବ ସାବିତ୍ରୀ ବୃତ୍ତାନ୍ତ । ମୂଳ ମହାଭାରତର ଦ୍ରୌପଦୀହରଣ ପର୍ବରେ ପ୍ରସଙ୍ଗ ବଶତଃ ଅବତାରିତ ରାମାୟଣ ଅଂଶ ଯେପରି ବିଶଦ ଭାବରେ ଅଛି, ଏଥିରେ ସେପରି ନାହିଁ । ଅଥଚ ଏକ ଅଞ୍ଜନା ସଂବାଦ କାହିଁ ଆଣି ଅତି ବିସ୍ତୃତ କରିଅଛନ୍ତି । ତାହା କିପରି ସତ୍ୟ-ବର୍ଜ୍ଜିତ, ନିରସ ଏବ ଅପ୍ରତ୍ୟେୟ, ନିମ୍ନୋଦ୍ଧୃତ ପଂକ୍ତି କତିପୟରୁ ଜଣା ଯିବ ।

ଅହଲ୍ୟା କହନ୍ତେ ଶୁଣ ଦ୍ରୁପଦ ଦୁହିତେ ।
ଅଞ୍ଜନୀ ବସିଲା ଲକ୍ଷେ ବର୍ଷ ପର୍ଯ୍ୟନ୍ତେ ।
ସହିଲା ଶରୀର ତଳେ ରହି ପୋକ
ଅସ୍ଥିମାଳ କଣ୍ଠ ତାହିଁ ହୋଇଲା ବୃଦେକ ।
ଲକ୍ଷେ ବର୍ଷ ପର୍ଯ୍ୟନ୍ତେ ହୋଇଥିଲା ବୃଦା ।
ଫୁଟି ବାହାର ହେଲା ଶରୀର ହୋଇ ଶୁଦ୍ଧା ।
ନଖ ମୁଖ ନାସିକା ଯେ ଚରଣ ଦୁଇଟି
ବୃଦାକୁ ବାହାର ହେଲା ଶରୀର ଯେ ଗୋଟି ।
ମହାଗ୍ନିକୁ ହେଲା ସନ୍ଧି ସେ କନ୍ୟାର କାୟ
ଖଡ଼ଗ ଅଗ୍ନିର ଜଳେ ହୋଇଲା ନିର୍ଭୟ

ଇତ୍ୟାଦ ପୃ ୧୪୩

ଏହି ଅଞ୍ଜନା ସଂବାଦର ଶେଷ ଅଂଶ ଏବଂ ହନୁମାନ ଜନ୍ମ ବଡ଼ ଅଶ୍ଳୀଳ । ଏହାପର ଅନେକ ସ୍ଥଳର ବର୍ଣ୍ଣନାରୁ କବିଙ୍କର ଲୋକ ପ୍ରତ୍ୟୟ ପ୍ରତି ବିଶେଷରେ ଆସ୍ଥା ବା ଦୃଷ୍ଟି ନ ଥିଲାପରି ଅନୁମାନ ହୁଏ । *

---

* ଏହି ପଟରେ କବି ସତ୍ୟାମ୍ବ ଗଛର ଉତ୍ପତ୍ତିସମ୍ବନ୍ଧରେ ଏକ ଅପୂର୍ବ ଗଳ୍ପର କଳ୍ପନା କରିଅଛନ୍ତି । ଚୈତ୍ର ମାସରେ ଆମ୍ବ ନ ମିଳିବାରୁ ଶ୍ରୀକୃଷ୍ଣ ବନବାସୀ ପଞ୍ଚଭ୍ରାତା ଏବଂ ପାଞ୍ଚାଳୀଙ୍କ ଆଗରେ ଗୋଟିଏ ମଞ୍ଜି ପୋତି କହିଲେ ତୁମ୍ଭେମାନେ ଯେ ଯାହାର ସତ୍ୟ ପ୍ରକାଶ କର, ତେବେ ଏ ଆମ୍ବଗଛ ହୋଇ ନିଷ୍ଫଳ ଫଳିବ; ତଦନୁସାରେ ସମସ୍ତେ ଅନ୍ତରହସ୍ୟ ପ୍ରକାଶ କଲେ । ଯୁଧିଷ୍ଠିରଙ୍କ ସତ୍ୟ ପ୍ରକାଶରେ ସେ ବୀଜ ଅଙ୍କୁରିତ ଏବଂ ଅପର ପାଣ୍ଡବ ଓ ଦ୍ରୌପଦୀଙ୍କ ସତ୍ୟ ପ୍ରକାଶରେ ତାହା ଯଥାକ୍ରମେ ପଲ୍ଲବିତ ଏବଂ ପୁଷ୍ପିତ ହୋଇ—ଗୋଟିଏ ଫଳ ଫଳିଲା ସେହି ଫଳଟିକୁ ପାଣ୍ଡବମାନେ କପ୍ରବେଣୀ ପାଚକ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କଲେ । ସେହି ଦିନଠାରୁ ଗଛର ନାମ ସତ୍ୟାମ୍ବ ହେଲା । ଏହି କଥା ବ୍ୟତୀତ କୃଷ୍ଣ, ଧ୍ରୁବ, ପାପ ଗଣକ ଓ ଶିଂଶପା ବୃକ୍ଷର ଉତ୍ପତ୍ତି ଉପାଖ୍ୟାନ ମଧ୍ୟ ସ୍ୱକପୋଳ କଳ୍ପିତ ବୋଲି ସ୍ପଷ୍ଟ ପ୍ରତୀତ ହୁଏ ।

୪—(ବିରାଟପର୍ବ)— ବିରାଟପୁରରେ ପାଣ୍ଡବଗଣଙ୍କ ଅଜ୍ଞାତ ବାସ; କୀଚକବଧ ଏବଂ ଗୋହରଣ ଏହି କେତୋଟି ବିରାଟପର୍ବର ପ୍ରଧାନ ବର୍ଣ୍ଣିତ ବିଷୟ । ଏହି ପର୍ବରେ କୀଚକ ଦ୍ରୌପଦୀ ଆକ୍ରମଣ ବର୍ଣ୍ଣନା ଯେପରି ଅଶ୍ଳୀଳତାର ଚରମ ସୀମାକୁ ଯାଇଅଛି, ଦ୍ରୌପଦୀଙ୍କର ସ୍ୱାମୀମାନଙ୍କ ପ୍ରତି ତତ୍କାଳୀନ କର୍କଶ ଭାଷା ମଧ୍ୟ ସେହିପରି ଧୃଷ୍ଟତାର ସୀମା ଲଙ୍ଘନ କରିଅଛି—ଅଦ୍ଭୁତ ମଧ୍ୟ ପାଚକବେଶୀ ଭୀମର ଅବସ୍ଥା ଅବସ୍ଥା ଉଦ୍ଧନ ଏବଂ ଅଲୌକିକ ପରିବେଷଣର ବର୍ଣ୍ଣନା (୧) ସତ୍ୟ ପ୍ରତ୍ୟୟର ଅପଚୟ ସାଧନ କରିଅଛି । ଭୀମର ବଳଶ୍ଳାଘା ଏବଂ ଔଦ୍ଧତ୍ୟକୁ ଯେମନ୍ତ କବି ଏଥିରେ ଯଥେଷ୍ଟ ବାକ୍ ବିସ୍ତାର କରିଅଛନ୍ତି; ତନ୍ଦ୍ରୂ ଏଣେ କୌରବ କର୍ତ୍ତୃକ ଗୋହରଣ ଏବଂ ଯୁଦ୍ଧାଦିର ବୃତ୍ତାନ୍ତ ମୂଳ ତୁଳନାରେ ଅତି ସଂକ୍ଷିପ୍ତ କରି ପକାଇ ଅଛନ୍ତି ।

୫—(ଉଦ୍ୟୋଗପର୍ବ)—ସୈନ୍ୟୋଦ୍ୟୋଗ, ସଞ୍ଜୟଯାତ୍ରା, ପ୍ରଜାଗର (ଧୃତରାଷ୍ଟ୍ର ବିଦୁରସମ୍ବାଦ) ଯାନସନ୍ଧି, ଭଗବାନଙ୍କ ଯାତ୍ରା କର୍ଣ୍ଣବିବାଦ, ସୈନ୍ୟ ନିର୍ଯାଣ, ଅମ୍ବୋପାଖ୍ୟାନ ପ୍ରଭୃତି ଏହି ପର୍ବର ଅନ୍ତର୍ଭୁକ୍ତ ବିଷୟ ଥିଲେହେଁ କବି ସ୍ୱତନ୍ତ୍ରରେ ପ୍ରଜାଗର ଏବଂ ସନତ୍ ସୁଜାତ, ମୂଳର ଏହି ଦୁଇଟି ଉପପର୍ବ ଛାଡ଼ିଅଛନ୍ତି । ଏତଦନ୍ତର୍ଗତ ଅମ୍ବା ଉପାଖ୍ୟାନ ଓ ଭୀଷ୍ମ ଦ୍ରୁପଦାଦିଙ୍କର ଇତିହାସକୁ କବି ଆଦିପର୍ବରେ ବର୍ଣ୍ଣନା କରିଅଛନ୍ତି ଏବଂ ବନପର୍ବ ଅନ୍ତର୍ଗତ କର୍ଣ୍ଣଙ୍କ କୁଣ୍ଡଳାହରଣ ବୃତ୍ତାନ୍ତକୁ ଏଥିରେ ଯୋଗ କରିଅଛନ୍ତି । ଛଦ୍ମବେଶୀ ଇନ୍ଦ୍ରଙ୍କର ଏହି କୁଣ୍ଡଳ କବଚ ଗ୍ରହଣ ବର୍ଣ୍ଣନା ଏପରି ପ୍ରାଣସ୍ପର୍ଶିନୀ ଭାଷାରେ ଲିଖିତ ଯେ, ପାଠକାଳରେ ଘନ ଘନ ରୋମାଞ୍ଚ ଜନ୍ମେ । ସୁଦେଷ୍ଣା ମୁଖରୁ

(୧) ସଙ୍ଗତରେ ଚଉଷଠୀ କୋଟି ପୋବାମାନେ
ସମ୍ଭବେ ବଳିଲ ରଜା ମଣୋହି ଅସନେ ।
ସାତଷୌନି ବଳ ଯେନ ବସେ ବସିଲେ
ଘିମ ଜଳ ବଧ ଉଦ୍ଧଣାକୁ ପରଶିଲେ । ବି ୧୮ ।

ଯୁଦ୍ଧର ଉପଖ୍ୟାନ୍ ପ୍ରସ୍ତାବ ଶ୍ରବଣ ଏବ ସ୍ୱ-ବୃତ୍ତାନ୍ତ ବର୍ଣ୍ଣନରେ (୧) କବି ସ୍ୱୀୟ ମହାପ୍ରସୀ କଳ୍ପନାର ଖେଳା ପ୍ରଦର୍ଶନ କରିଅଛନ୍ତି ।

୬ (ଭୀଷ୍ମପର୍ବ)—ଭଗବଦ୍ ଗୀତା ଏବ ଭୀଷ୍ମବଧ ଏହି ପର୍ବର ପ୍ରସିଦ୍ଧ ବର୍ଣ୍ଣିତ ବିଷୟ । ଏହାର ଆଦ୍ୟ ଏବ ଅନ୍ତରେ ବହୁତ ଅବାନ୍ତର କଥାର ଉଲ୍ଲେଖ ଅଛି । ଏଥିର ଏକ ପାର୍ଶ୍ୱରେ କବି ଭୀଷ୍ମବଧ ଏବ ଦଶ ଦିନର ଘୋରସାର ଯୁଦ୍ଧ ବର୍ଣ୍ଣିବାକୁ ଯେପରି ବିସ୍ତୃତ କରିଅଛନ୍ତି ଅନ୍ୟ ଆଡ଼େ ଶାସ୍ତ୍ରସାର ଭଗବଦ୍‌ଗୀତାକୁ ସେହିପରି ଅତିସଂକ୍ଷିପ୍ତ କରି ଦେଇ ଅଛନ୍ତି । କିନ୍ତୁ ଏହି ଗୀତାରେ ସ୍ଥାନେ ୨ କବି ଟୀକାଏ ମୂଳକୁ ଅନୁସରଣ କରିଅଛନ୍ତି । ଯେଉଁ ୨ ସ୍ଥଳରେ ମୂଳ ସହିତ ମେଳ ଅଛି ତଳେ ସେଥିରୁ କେତୋଟି ପାଠକମାନଙ୍କର କୌତୂହଳ ନିବାରଣାର୍ଥ ଉଦ୍ଧୃତ କରୁଅଛୁଁ ।

୧—ଗୀତା ଦ୍ୱିତୀୟ ଅଧ୍ୟାୟ ।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ । ୨୨

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ । ୨୩ ।

୨—ଜୀର୍ଣ୍ଣ ଲୁଗା ଛାଡ଼ି ନୂଆ ପିନ୍ଧନ୍ତି ପରାୟେ
ଆତ୍ମା ଯାଇ କରି ପୁଣି ନୂଆ ଦେହ ପାଏ ।
ଆତ୍ମାକୁଟି ଶସ୍ତ୍ର କେବେ ନ ପାରଇ କାଟି
ଅଗ୍ନି ପୋଡ଼ି ନ ପାରନ୍ତି ଆତ୍ମାକୁ କଦାଚି ।

---

(୧) କଳିଯୁଗେ ଜନ୍ମିବ ଇନ୍ଦ୍ରଦ୍ୟୁମ୍ନ ହୋଇ ।
ଗୁଣ୍ଡିଚା ନାମେ ଏହା ନାରୀ ହେବ ମହୀ ।

ଏଠାରେ କବି ନୀଳାଚଳର ସ୍ୱର୍ଣ୍ଣଭଣ୍ଡାରା ପ୍ରତି ଲକ୍ଷ୍ୟ ରଖି ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚାଙ୍କର ପୂର୍ବଜନ୍ମ ପ୍ରମାଣ ସମ୍ମତ କରିବାକୁ ଚେଷ୍ଟା କରିଅଛନ୍ତି ।

ସହାଇ ନ ପାରେ ମଧ୍ୟ ତାହାଙ୍କୁଟି ଜଳ
ଶୁଖାଇ ନ ପାରେ ତାର ଅଣୁଏ ଅନଳ । ଭ୍ରୀ ୮; ପୃ; ୪୩

୬ ଅର୍ଜୁନ ଉବାଚ
ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃକିଂପ୍ରଭାଷେତ କିମାସୀତ ବ୍ରଜେତ କିଂ । ୫୪ ।
ଶ୍ରୀଭଗବାନୁବାଚ—
ପ୍ରଜହାତି ଯଦାକାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ।
ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ
ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।

ଓ—ଅର୍ଜୁନ ବୋଲେ ତହୁଁ ସ୍ଥିତପ୍ରଜ୍ଞଲୋକ
ଲକ୍ଷଣ କହ ମୋତେ ହେ ରୁକ୍ମିଣୀ ନାୟକ ।
କିରୂପରେ କହେ ସେହି କିରୂପରେ ଥାଏ
କିରୂପେ ବସଇ ସେହୁ କିରୂପେ ବୁଲାଏ ?
ଶ୍ରୀକୃଷ୍ଣ ବୋଇଲେ ହେ କାମନା ଛାଡି ଦେଇ
ଯେ ରହଇ ତାହାଙ୍କୁ ଯେ ସ୍ଥିତପ୍ରଜ୍ଞ କହି ।
ଦୁଃଖରେ ଯେଉଁ ଲୋକ ଉଦ୍ବେଗମନା ନୋହେ
ସୁଖ ଜନ୍ମେ ଆଶାକୁ ନ ବୃଦ୍ଧାଏ ମୋହେ ।
ହୃଦୟରୁ ରାଗ ଯେହୁ କରିଥାଏ ଦୂର
ସ୍ଥିର ପ୍ରଜ୍ଞ ବୋଲିଣ ବୋଲାଏ ସେହୁ ନର ।
ଭା ପ ପୃ ୪୩

୩ ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ,
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ । ୬୯

ଓ—ପ୍ରାଣୀଙ୍କି ଯେ ବ୍ରହ୍ମଜ୍ଞାନ ବିଭାବରୀ ପରି
ତହିଁରେ ଯୋଗୀଜନ ଥିଅନ୍ତି ଉଜାଗରୀ ।

ଏଇ ଯେଉଁ ଜାଣ ପ୍ରାଣୀମାନଙ୍କ ଦବସ
ଯୋଗୀ ଜନମାନଙ୍କୁ ସେ ଅନ୍ଧାର ସଦୃଶ । ପୃ ୨

ତୃତୀୟ ଅଧ୍ୟାୟରେ—ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ
ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେ ନିଧନଂ ଶ୍ରେୟଃ
ପରଧର୍ମୋ ଭୟାବହଃ । ୩୫ ।

ଓ—ପର ଧରମ କୀର୍ତ୍ତିକ ଆପଣାର ଧର୍ମ
ନାଉନ ହେଲେହେଁ ସ୍ୱଧା ଅଟଇ ଉତ୍ତମ
ସ୍ୱଧର୍ମରେ ମରଣ ଅଟଇ ମଧ ଶ୍ରେୟ
ତେଣୁ ଯୁଦ୍ଧ କର ହେ ଅର୍ଜ୍ଜୁନ କର ଜୟ ।

ପଞ୍ଚମ ଅଧ୍ୟାୟରେ—ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ

ଓ—ବିଦ୍ୟାବନ୍ତ ଜନ ଯେ ଚଣ୍ଡାଳ ଗାଈ ହାତୀ
କୁକୁରରେ ସମାନ ଯାହାର ଅଟେ ମତି ।
ତାହାକୁ ଅଟେ ଅର୍ଜ୍ଜୁନ ଜ୍ଞାନୀ ବୋଲି କହୁ
ଅନଠାରେ ସେ କଥା ସମ୍ଭବ ହେବ କାହୁଁ ।

ଦଶମ ଅଧ୍ୟାୟରେ—
ଅଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍
ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ । ୨ ।
ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାଂ
ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହଂ । ୩ ।

ଓ—ଦ୍ୱାଦଶ ଅଦିତ୍ୟଙ୍କ ମଧ୍ୟରେ ବିଷ୍ଣୁ ମୁହିଁ
ଜ୍ୟୋତିଙ୍କ ମଧ୍ୟରେ ସୂର୍ଯ୍ୟ ଦେବତା ଅଟଇ ।
ତେଜସ୍ୱୀମାନଙ୍କରେ ତେଜ ମୁହିଁ ଅଟଇ
ଜିଣିବା ଲୋକଙ୍କରେ ଜୟନ୍ତି ମୋତେ କହୁ ।

ଗୁପତ କଥାରେ ଅଟେଁ ମୁଁ ମନ୍ତ୍ର ବଚନ
ମୁହିଁ ଟି ହେ ଅରଜୁନ ତତ୍ତ୍ୱଜ୍ଞାନ-ଜ୍ଞାନ

ଏହିପରି ପ୍ରତି ଅଧ୍ୟାୟର କେବଳ ପ୍ରସିଦ୍ଧ ଶ୍ଳୋକାବଳୀର ଅନୁବାଦ ଥିବାର ଦେଖି ଅନୁମାନ ହୁଏ, କବିଙ୍କର ଯେଉଁ ଶ୍ଳୋକଗୁଡ଼ିକ ସ୍ମରଣାଧୀନ ଥିଲା କେବଳ ସେହିଗୁଡ଼ିକର ଭାବ ସେ ପ୍ରକାଶ କରି ପାରି ଅଛନ୍ତି ।

୭ (ଦ୍ରୋଣପର୍ବ)--ଏହି ପର୍ବରେ ଦ୍ରୋଣଙ୍କର ଅଭିଷେକ ସଂଶପ୍ତକ-ବଧ, ଅଭିମନ୍ୟୁବଧ, ଅର୍ଜୁନର ଜୟଦ୍ରଥ ବଧ ପ୍ରତିଜ୍ଞା, ଜୟଦ୍ରଥବଧ ଏବଂ ଦ୍ରୋଣବଧ ଏହି ସବୁ ଘଟନା ପେନ୍ଦ୍ର ଦିନର ଯୁଦ୍ଧ ବର୍ଣ୍ଣିତ ଅଛି । ସମ୍ପୂର୍ଣ୍ଣ ସଂଶପ୍ତକପର୍ବବର୍ଣ୍ଣିତ ବିଷୟ ଏଥିରେ ମ୍ଳେଚ୍ଛ ରାଜାର (୧) ଯୁଦ୍ଧ ବୋଲି ବିସ୍ତୃତ ଭାବରେ ଲିଖିତ ହୋଇଅଛି । ଅଭିମନ୍ୟୁ ବଧ ବିଶେଷତଃ ଜୟଦ୍ରଥ ବଧ ମୂଳତୁଳନାରେ ଅତି ସଂକ୍ଷିପ୍ତ ହୋଇଥିଲେହେଁ ଏଥିର ବର୍ଣ୍ଣନା ସାରଳଙ୍କର ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି ।

୮ (କର୍ଣ୍ଣପର୍ବ)—ଏଥିରେ ଦୁଃଶାସନ ବଧ ଏବଂ କର୍ଣ୍ଣବଧ ଏହି ଦୁଇଟି ପ୍ରଧାନ ଘଟନାକୁ ନେଇ ଅଠରଦିନର ଯୁଦ୍ଧ ବର୍ଣ୍ଣିତ ଅଛି । ଏ ଉଭୟ ପର୍ବର ବିଷୟ ଯେପରି ଚିତ୍ତୋତ୍କର୍ଷକ ଏବଂ ସାରଳସାମ୍ୱତ, ଭାଷା ତାଦୃଶ ଉପଯୋଗିନୀ ଏବଂ ଓଜସ୍ୱିନୀ ଥିବାରୁ ଅନ୍ୟାନ୍ୟ ପର୍ବ ଅପେକ୍ଷା ଏ ଦୁଇଟି ମାର୍ଜିତ । ତେଣୁ ଏହି ଦୁଇ ପର୍ବରୁ ଗୋଟିଏ ଉତ୍କୃଷ୍ଟ ଚିତ୍ର ନେଇ ଆଧୁନିକ କବିମାନେ କାବ୍ୟାଦି ରଚନା କରି ଅଛନ୍ତି । (୨) ତଥାପି ଏଥିରେ ବେଣୀ ସଂହାର ସ୍ଥଳରେ ଦ୍ରୌପଦୀଙ୍କର ସ୍ୱାମୀଆହ୍ୱାନ ଏବଂ ଶୃଙ୍ଗାର ଚିତ୍ର ଅତୀବ ଅଶ୍ଳୀଳତାବ୍ୟଞ୍ଜକ ।

---

(୧) ଅବଚଳା ମ୍ଳେଚ୍ଛଦେଶ ରଜାର ସଇନ ।
ଜଳଧର ବ୍ୟୂହେ ରଣ କଲେ ଫାଲଗୁନ । ପୃ ୧୪ ।

(୨) ସୁପ୍ରସିଦ୍ଧ ସ୍ୱର୍ଗୀୟ ଭକ୍ତ ଓ ଭଞ୍ଜ କବିଙ୍କ ବେଣୀ ସଂହାର ଓ କର୍ଣ୍ଣ ବଧ, ଅନ୍ୟାନ୍ୟ କବିଙ୍କ 'ଜୟଦ୍ରଥ ବଧ ଓ ଅଭିମନ୍ୟୁ ବଧ ।

୯ (ଶଲ୍ୟପର୍ବ)—ପୂର୍ବୋକ୍ତ ପର୍ବମାନଙ୍କରେ ମହାଭାରତର ଅଠର ଦିନ ଯୁଦ୍ଧରୁ ସାଢ଼େ ସତର ଦିନର ଯୁଦ୍ଧର ବର୍ଣ୍ଣନା ଯାଇଅଛି, ଅବଶିଷ୍ଟ ଅର୍ଦ୍ଧ ଦିନର ଯୁଦ୍ଧ ବର୍ଣ୍ଣନା ଏହି ପର୍ବରେ ଶେଷ ହୋଇ-ଅଛି, ଫଳତଃ ମହାଭାରତୀୟ ମହା ସମରାନଳର (*) ଏହିଠାରୁ ପ୍ରଶମନ ହେଲା । ସହଦେବକୃତ ଶକୁନିବଧ, ଯୁଧିଷ୍ଠିରଙ୍କ ପ୍ରହାର କରୁ କରୁ ଶଲ୍ୟର ଦାହ ଓ ମୃତ୍ୟୁ ଏବଂ ଗଦାଯୁଦ୍ଧରେ ଭୀମ କର୍ତ୍ତୃକ ଦୁର୍ଯ୍ୟୋଧନର ଉରୁଭଙ୍ଗ ଏହି ପର୍ବର ଅଙ୍ଗୀଭୂତ ହେଲେହେଁ କବି ଶେଷୋକ୍ତ ବର୍ଣ୍ଣନାଟି ଏପର୍ବରେ ସମ୍ପୂର୍ଣ୍ଣ ପ୍ରକାଶ କରି କେବଳ ଭୀମ ଦୁର୍ଯ୍ୟୋଧନଙ୍କର ଗଦାଯୁଦ୍ଧକୁ ଅବଲମ୍ବନ କରି ଗୋଟିଏ ସ୍ୱତନ୍ତ୍ର ପର୍ବ ( ଗଦାପର୍ବ ) କରିଅଛନ୍ତି । ସେହି ଗଦା-ପର୍ବରେ କରୁଣରସର ମାତ୍ରା ଅଧିକ । ଦକ୍ଷଯଜ୍ଞ ବର୍ଣ୍ଣନାରେ ଶିବଲିଙ୍ଗ ପ୍ରଦର୍ଶନାଦି ଅତି ଅଶ୍ଳୀଳ ଏବଂ ଗ୍ରାମ୍ୟ ହୋଇ ପଡ଼ିଅଛି ।

୧୦ (ସୌପ୍ତିକପର୍ବ)— ସଂସ୍କୃତ ସୌପ୍ତିକ ପର୍ବର ଅନ୍ତର୍ଗତ କେବଳ ଐଷିକ ପର୍ବର ଘଟନାକୁ ଘେନି କବି କାଉଁଶିକା ପର୍ବ ରଚନା କରି-ଅଛନ୍ତି । କୃପାଚାର୍ଯ୍ୟଙ୍କ ମୁଖରୁ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଶସ୍ତ୍ର ହରଣ ସମ୍ବାଦ ପାଇ ଅଶ୍ୱତ୍ଥାମା କୋପରେ କାଉଁଶ ଗଛରେ ଧନୁର୍ବାଣ ନିର୍ମାଣ କରି ଉତ୍ତରା ଗର୍ଭକୁ ଲକ୍ଷ୍ୟକରି ବ୍ରହ୍ମଶର ପ୍ରେରଣ କରିଥିଲେ ବୋଲି ଏହି ପର୍ବର ଏପରି ନାମକରଣ ହୋଇଅଛି ।

୧୧ (ନାରୀପର୍ବ)— ଏ ପର୍ବରେ ସଂସ୍କୃତର ଜଳପ୍ରଦାନିକ ପର୍ବ ସମ୍ପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇ ନାହିଁ । ଦ୍ୱାରକା ଶ୍ରୀକୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥା-ଗମନ, ଗାନ୍ଧାରୀଙ୍କ ଅଙ୍ଗପୁତୁଳି ବାହାରେ ପୁଣି ଦୁର୍ଦ୍ଦଶାର ଭସ୍ମୀଭବନ । ଧୃତରାଷ୍ଟ୍ରଙ୍କର ଅପୂର୍ବ ଲୌହପ୍ରତିମା ଭଙ୍ଗ, କୌରବ ରମଣୀମାନଙ୍କର

(*) ପୃଥ୍ୱୀରେ ବୋଲେ ମମ ଜୀବନ ଜୀବନ
ଜୀବ ଜନ୍ତୁ, ବୋଲି ବନ୍ଧୁ ସଙ୍ଗେ ଜୀବନ । ଶ; ପ, ପୃ ୮ ।

ବିଳାପ ଓ କୁରୁକ୍ଷେତ୍ର ବର୍ଣ୍ଣନ ଏବଂ ଗାନ୍ଧାରୀ ଶ୍ରୀମ ସମ୍ବାଦ ଅତି କୌତୁକାବହ ଭାଷାରେ ବର୍ଣ୍ଣିତ ହୋଇଅଛି ।

୧୨ (ଶାନ୍ତିପର୍ବ)—ଏଥିରେ ଶାନ୍ତିପର୍ବର ସତ୍ତା ନାହିଁ ବୋଲିଲେ ଚଳେ । କାରଣ ସଂସ୍କୃତ ମହାଭାରତର ଯେଉଁ ପର୍ବଟି ସର୍ବାପେକ୍ଷ ବୃହତ୍ ; ଆକାରରେ ବନପର୍ବର ପ୍ରାୟ ଦୁଇ ଗୁଣ ଏବଂ ଯାହା ସୁଦୀର୍ଘତର ୩୬୫ ଅଧ୍ୟାୟରେ ସମାପ୍ତ ହୋଇଅଛି, ତାହାକୁ କବି ଅଧ୍ୟା-କର ପାଠରେ ଶେଷ କରି ଦେଇଅଛନ୍ତି । ତଦନ୍ତର୍ଗତ ରାଜଧର୍ମ, ଆପଦ୍ଧର୍ମ ଏବଂ ମୋକ୍ଷଧର୍ମ ଏହି ତିନି ସୁଦୀର୍ଘ ଉପପର୍ବ ମଧ୍ୟରୁ ଏଥିରେ କେବଳ ପ୍ରଥମଟିର କିଞ୍ଚିତ୍ ଆଭାସ ଅଛି । ଯୁଧିଷ୍ଠିରଙ୍କ ପ୍ରତି ଭୀଷ୍ମଙ୍କର ନାନା ଉପଦେଶ, ଭୀଷ୍ମଙ୍କର ସ୍ୱେଚ୍ଛାମୃତ୍ୟୁ ଏବଂ ମହୋଦଧି କୂଳରେ ତାଙ୍କର ଶବଦାହ ଅନ୍ତେ ଯୁଧିଷ୍ଠିରଙ୍କର ଅଭିଷେକ ଏହି କେତୋଟି ଘଟନା ଏଥି ବର୍ଣ୍ଣନ କରିଅଛନ୍ତି । କିନ୍ତୁ ମହାସମରାନଳ-ନିର୍ବାଣଜନିତ ଅବସରରେ ଏବଂ ମରଣର ପୂର୍ବାଂଶରେ ପ୍ରବୀଣ ବୃଦ୍ଧ ଏବଂ ମହାଜ୍ଞାନୀ ଭୀଷ୍ମଙ୍କ ମୁଖରୁ କେତେ ଯେ ଆଶ୍ରମଧର୍ମାଦିର କଥା, ଅସଂଖ୍ୟ ଉପାଖ୍ୟାନ ଏବଂ ନାନା ଗୀତା ବା ତତ୍ତ୍ୱ ଶାସ୍ତ୍ରର କଥା ବାହାରିବା ଯେ ସ୍ୱାଭାବିକ, ତତ୍ପ୍ରତି କବି ଆଦୌ ଦୃଷ୍ଟି ଦେଇ ନାହାନ୍ତି । ଫଳତଃ ଯେଉଁ ପର୍ବର ବିଷୟବୈଚିତ୍ର୍ୟରେ ସମଗ୍ର ମହାଭାରତ ବୈଚିତ୍ର୍ୟମୟ, ଏ କବି ତାହାର ଗାମ୍ଭୀର୍ଯ୍ୟ ଏବଂ ମହତ୍ତ୍ୱ ଏକାବେଳକେ ନଷ୍ଟ କରି ପକାଇ ଅଛନ୍ତି ।

୧୩ (ଅନୁଶାସନପର୍ବ)—ଏ ପର୍ବଟି ଓଡ଼ିଆରେ ଏକାବେଳକେ ନାହିଁ । ସଂସ୍କୃତର ଏହି ପର୍ବରେ ନାନା ସମ୍ବାଦ (ପ୍ରଶ୍ନୋତ୍ତର), ନିନ୍ଦା ପ୍ରଶଂସା ଏବଂ ଉପଦେଶ ଅଛି । ଏହାର ୧୬୮ ଅଧ୍ୟାୟ ମଧ୍ୟରୁ ଦୁଇ ତିନି ଅଧ୍ୟାୟର (ଲୌକିକ କଥା) ବିଷୟ ଓଡ଼ିଆ ଐଶିକ ପର୍ବରେ ଏବଂ କେତେକ ଶାନ୍ତି ପର୍ବରେ ଭୁକ୍ତ କରା ହୋଇଅଛି ।

ଶାନ୍ତି ପର୍ବପର ଏଥିର ପ୍ରତିପାଦିତ ବିଷୟ କେବଳ ଉପାଖ୍ୟାନ ଶ୍ରେଣୀୟ ନ ଥିବାରୁ କବି ଏହି ଉଦୟରେ କୃତିତ୍ୱ ଦେଖାଇ ପାରି ନାହାନ୍ତି ।

୧୪ (ଅଶ୍ୱମେଧପର୍ବ)—ଓଡ଼ିଆରେ ଏହି ପର୍ବଟି ଅଶ୍ରମିକ (୧୫ଶ) ପର୍ବର ପରବର୍ତ୍ତୀ ହୋଇଅଛି । ଏ କ୍ରମଭଙ୍ଗ ଅବଶ୍ୟ କବିଙ୍କର ନୁହେ ପ୍ରକାଶକଙ୍କର । କବି ମୂଳଅନୁକ୍ରମେ ଅଶ୍ୱମେଧରେ କୃଷ୍ଣାଦିଙ୍କର ନିମନ୍ତ୍ରଣ ଏବଂ ଅଶ୍ରମିକରେ ଯଦୁବଂଶ ଧ୍ୱଂସ ଓ କୃଷ୍ଣଙ୍କର ଦେହତ୍ୟାଗ ବର୍ଣ୍ଣନା କରି ଅଛନ୍ତି । ମୂଷଳ ଉତ୍ପତ୍ତି ଏବଂ ଶ୍ରୀକୃଷ୍ଣଙ୍କର ସ୍ୱର୍ଗ-ଗମନ ମୂଷଳ ପର୍ବର ଅନ୍ତର୍ଗତ ହେଲେହେଁ କବି ଏ ପର୍ବରେ ମଧ୍ୟ ସେଥିର ଏକ ଅପୂର୍ବ କାହାଣୀ ପ୍ରକାଶ କରିଅଛନ୍ତି, ତାହା ଏହି ଯେ, ଋଷି ଶାପରୁ ଯେଉଁ ଲୌହ ମୂଷଳ ଜାତ ହୋଇଥିଲା, ତାହାକୁ ସମସ୍ତେ ନେଇ ମହୋଦଧି କୂଳସ୍ଥ ନୀଳଗିରି ଉପରେ ଘୋରିଲେ, ଶେଷରେ ଭୀମ, ଘୋରି୨ (୧) ଗିରି ଧୂଳା ସରି ଗଲା; ତଥାପି କିଛି ଅବଶେଷ ରହିବାର ଦେଖି ସମୁଦ୍ରକୁ ଫିଙ୍ଗି ଦେଲେ ଏବଂ ତତ୍-କ୍ଷଣାତ୍ ତାକୁ ଗୋଟିଏ ମତ୍ସ୍ୟ ଗିଳି ଦେଲା । ବେଣ୍ଟପୁରର କୁଞ୍ଜରା କେଉଟ ସେହି ମାଛକୁ ଧରି ଆଣି ଜରାଶବରକୁ ଦେଲା । ଶବର ଗୃହିଣୀ ମାଛ ପେଟରୁ ସେ ଲୌହ ଖଣ୍ଡ ପାଇ ସ୍ୱାମୀକୁ ଦେଇଥିଲେ, ଜରା

---

(୧) ଷୀର ପିଣ୍ଡୁ ଘଟେ ନୀଳ ନାମେଣ ଯେ ଗିରି,
ବଣାଣଢେ ଯୋଜନ ସେ ବସ୍ତାର ତାହାରି ।
ଚହ୍ନିରେ ଘଷିଗଲି ଦେବକନ୍ତବଃ ଗଣ:
ତାପରେ ମୁଁ ସେ ଲୁହାକୁ ଘୋଷିବି ନିଠାଇ ।
ଏଗାର ବରଷେ ସେହି ଲୁହା ସେ ଛିଣ୍ଡିଲା;
ସେ ନୀଳ ପର୍ବତ ଭୂମି ସମାନ ହୋଇଲା । ଅ ପ ପୃ ୪ ।

ନୀଳାଚଳର ନାମ ଏବଂ ଦାରୁବ୍ରହ୍ମ ଉତ୍ପତ୍ତି ସମ୍ବନ୍ଧରେ କବି ଏଠାରେ ଏକ ଅପୂର୍ବ ସମର୍ଥନ କରିଅଛନ୍ତି । ମୂଷଳୀ ପର୍ବର ୩୧ ପୃଷ୍ଠା ପାଠ କଲେ ପାଠକେ ଜାଣି ପାରିବେ ।

(୬) ତହିଁରେ ନାସ୍ତିତ ଛଅର କର ବନରେ ଭ୍ରମଣ କରୁ ଥିବ ବେଳେ ଶିଅଳଲତାରେ ଶୋଇଥିବା ଶ୍ରୀକୃଷ୍ଣଙ୍କୁ ମୃଗ ମଣି ବାମ ପାଦକୁ ଲକ୍ଷ୍ୟ କରଥିଲା ଏବଂ ସେଥିରେ ଶରବଦ୍ଧ ଶ୍ରୀକୃଷ୍ଣ ଜ୍ୟୋତିର୍ମୟ ରଥରେ ସ୍ୱର୍ଗ ପ୍ରସ୍ଥାନ କରଥିଲେ । କିନ୍ତୁ ମୂଳଗ୍ରନ୍ଥରେ ଠିକ୍ ଏପର ନାହିଁ । ଜର ଧନୁଃଶର ଘେନ ଭ୍ରମଣ କରୁଥିବାବେଳେ ହଠାତ୍ ବନମଧ୍ୟରେ ଯୋଗାସନସ୍ଥ ପୀତାମ୍ବର କୃଷ୍ଣଙ୍କୁ ଦେଖି ମୃଗଭ୍ରମରେ ଶର ସନ୍ଧାନ କଲା ଏବଂ ସଦ୍ୟ ନିଜକୁ ମହାଅପରାଧୀ ଜାଣି ଶ୍ରୀକୃଷ୍ଣଙ୍କ ପାଦ-ତଳ ଧର ବହୁ ଅନୁନୟ ବିନୟ କଲା (୩) ।

୧୬ (ମୌଷଲପର୍ବ)—ମୂଷଳୀ ପର୍ବରେ ପାନାସକ୍ତ ଯାଦବମାନ-ଙ୍କର ପରସ୍ପର ଯୁଦ୍ଧ ଓ ମୃତ୍ୟୁ, ପରଶେଷରେ ରାମ କୃଷ୍ଣଙ୍କର ସ୍ୱର୍ଗ-ଗମନ, ଅର୍ଜୁନଙ୍କର ଯାଦବୀମାନଙ୍କ ସହିତ କୃଷ୍ଣାଭିଗମନ ଏବଂ ଶୋକୋଚ୍ଛ୍ୱାସାଦିବର୍ଣ୍ଣିତ ହୋଇଅଛି ।

୧୭ (ମହାପ୍ରାସ୍ଥାନିକପର୍ବ)—ଓଡ଼ିଆରେ ଏହି ପର୍ବ ନାହିଁ । ତହିଁର ବିଷୟ ଅଥବା ପାଣ୍ଡବମାନଙ୍କର ମହାପ୍ରସ୍ଥାନ, ହିମାଳୟସ୍ୱୋହ-ଣରେ ଦ୍ରୌପଦୀ ପ୍ରଭୃତିଙ୍କର ପତନ ଏବଂ ଯୁଧିଷ୍ଠିରଙ୍କର ସ୍ୱର୍ଗାରୋହଣ ଏ ଘଟନା ମାନ ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣିତ ଅଛି । ଏହି ବର୍ଣ୍ଣନା ବ୍ୟତୀତ କବି ଶେଷୋକ୍ତ ପର୍ବରେ ଅନେକ ଅମୂଳକ କଥାର ଯୋଜନା କରଅଛନ୍ତି । ବିଶେଷତଃ ଯାଜପୁର ଅଞ୍ଚଳ ବାସୀ ବୈଶ୍ୟ ହର ପାଳ୍କର କନ୍ୟାସହିତ ଯୁଧିଷ୍ଠିରଙ୍କର ବ୍ୟାସାଦ ମହର୍ଷିଗଣଙ୍କ ସମ୍ମୁଖରେ ବିବାହ

---

(୨) ଏହି ଜାତଗଣବରର ବଣଧରମାନେ ଦଉଡ଼ା ନାମରେ ଅଶ୍ୟାତ ବୋଲ ମଦ ପ୍ରକାଶ କରଥଛନ୍ତି ।

(୩) ଜରାଥ ତଂ ଦେଶ ମୁପାଜଗାମ ଲୁବ୍ଧସ୍ତଦାନୀଂ ମୃଗଲିପ୍ସୁରୁଗ୍ରଃ ।
ସ କେଶବ ଯୋଗପ୍ରୁକ୍ତଂ ଶୟାନଂ ମୃଗାଶଙ୍କୀ ଲୁବ୍ଧକଃ ସାୟକେନ ।
ଜରବିଧ୍ୟତ ପାଦତଳେ ତ୍ୱରବାଂସ୍ତଂ ଗୃହ୍ନତସ୍ତୃର୍ଚି ଗୃକ୍ଷୁର୍ଜଗାମ ।
ମହ୍ସ୍ୱାନଂ ବ୍ୟପବିଦଧସ୍ୟ ପାଦୌ ଜରାକବୃହେ ଶଙ୍କିତାତ୍ମା ॥

ମୌ ୪ ର୍ଥ ଅ:

ପ୍ରସ୍ତାବ (୧) ଅତ୍ୟନ୍ତ ଅସତ୍ୟ ଏବଂ ଅସଙ୍ଗତ । ସ୍ୱର୍ଗାରୋହଣ-ପର୍ବର ଏହି କେତେକ ଅଂଶ ପ୍ରକ୍ଷିପ୍ତ ଥିବାର ଏଥିପୂର୍ବେ ସପ୍ରମାଣ କରାଯାଇଅଛି, ଅନ୍ୟ ଯାହାଥାଉ ଏଥିରେ ସଂସ୍କୃତ ସ୍ୱର୍ଗାରୋହଣ ପର୍ବ (୧୮ ଶ) ର ବର୍ଣ୍ଣିତ ବିଷୟ ଅର୍ଥାତ୍ ସ୍ୱର୍ଗରେ ନାରଦ ଯୁଧିଷ୍ଠିର ସବାଦ, ଯୁଧିଷ୍ଠିରଙ୍କର ନରକଦର୍ଶନ ଓ ଅର୍ଜ୍ଜୁନାଦଙ୍କର ଦର୍ଶନ ଏଥିରେ ବର୍ଣ୍ଣିତ ନାହିଁ ।

ଭାଷା ଓ ଭାବ ।

ଏପର୍ଯ୍ୟନ୍ତ ଆମ୍ଭେମାନେ ମହାଭାରତର ପ୍ରତିପର୍ବ ପ୍ରତିପାଦିତ ବିଷୟର ସଂକ୍ଷିପ୍ତ ଆଲୋଚନା କରିଆସିଲୁଁ । ବର୍ତ୍ତମାନ ଗ୍ରନ୍ଥର ଭାଷା ଓ ଭାବ ସମ୍ବନ୍ଧରେ ସଂକ୍ଷେପରେ କିଛି କହିବାକୁ ଚେଷ୍ଟା କରିବୁଁ । ଏହି ବିଷୟର ଆଲୋଚନା ପୂର୍ବରୁ ଆମ୍ଭେମାନେ ମହାଭାରତକୁ ଭାବ ଓ ଭାଷା ଦୃଷ୍ଟିରେ ତିନୋଟି ଭାଗରେ ବିଭକ୍ତ କରୁଅଛୁଁ । ପ୍ରଥମ ଭାଗରେ ଆଦିପର୍ବଠାରୁ ବିରାଟ ପର୍ବ ପର୍ଯ୍ୟନ୍ତ ପାଞ୍ଚୋଟି ପର୍ବ, ଦ୍ୱିତୀୟଭାଗରେ ଉଦ୍ୟୋଗ ପର୍ବଠାରୁ ଶଲ୍ୟପର୍ବ ପର୍ଯ୍ୟନ୍ତ ୫ ପର୍ବ ଏବ ତୃତୀୟ ଭାଗରେ ଅବଶିଷ୍ଟ ପର୍ବ ଗୁଡ଼ିକ ରହିବା ଉକ୍ତ ଦୃଷ୍ଟିରେ ସଙ୍ଗତ ବିବେଚନା କରୁଅଛୁଁ ।

ଦେହିନୋଽସ୍ମିନ୍ ଯଥାଦେହେ କୌମାରଂ ଯୌବନଂ ଜରା ।
ତଥାଚ ଭାରତେ ଗ୍ରନ୍ଥେ ପ୍ରେଷୋଽହମବସ୍ଥାତ୍ରୟଂ ।

---

(୧) ସିହାଣୀ କନ୍ୟାକୁ ବରି ହେଲେ ଧର୍ମସୁତ,
ରହିଲେ ସେ ପଞ୍ଚସ୍ତର ବର୍ଷ ପରିଯନ୍ତ ।
ପରୀକ୍ଷିତେ ରାଜ୍ୟ ଦେଲେ ଯାଜନ ନଗର;
ପଞ୍ଚ କଟକର ମଧ୍ୟେ ଏକା ଅଧିକାର—ସ୍ୱ, ପ, ପୃ ୮ ।

ଏହି ସମସ୍ତ ମଧ୍ୟରେ ଭୀମଙ୍କର ଧାନ ଭାର ଅଣିବା ଏବଂ ବାଘ ଯୋଡ଼ ବେଢ଼ିବା ପକାଇବା ଆଦି 'ସିହାଣୀ'ଙ୍କର କନଡାଗଡ଼ରେ ଅବସ୍ଥାନ ଇତ୍ୟାଦି ପ୍ରକାର ବର୍ଣ୍ଣନା ବଡ଼ ଅମୂଳକ ଓ ଘୃଣା ବ୍ୟଞ୍ଜକ ।

ଯଥାର୍ଥରେ ଉଲ୍ଲିଖିତ ତିନିଭାଗରେ ବାଲ୍ୟ, ଯୌବନ ଓ ବାର୍ଦ୍ଧକ୍ୟର ବୈଚିତ୍ର୍ୟ ପ୍ରତ୍ୟକ୍ଷ କରାଯାଏ ।

ଦେଖାଯାଏ ବାଳକ ସଦା ଚଞ୍ଚଳ, ଅସ୍ପଷ୍ଟଭାଷୀ ଏବଂ କଳ୍ପିତ-ଗଳ୍ପପ୍ରିୟ । ଅତ୍ରମଧ୍ୟ ଶିଶୁ ସଦା ଉଲଗ୍ନ ଥାଇ ନିର୍ବିକାର ଭାବରେ ଅଶ୍ଳୀଳତାକୁ ଅଙ୍ଗୀଭୂତ କରିଥାଏ ଏବଂ ଯାହା ଇଚ୍ଛା ତାହା ବର୍ଣ୍ଣନ କର କରେ । ଯେଉଁମାନେ ଏହି ମହାଭାରତର ପ୍ରଥମ ଭାଗ ପାଠକରିବେ, ସେମାନେ ଦେଖିପାରିବେ ଯେ ଏଥିରେ ଉକ୍ତ ବାଲ୍ୟ-ସୁଲଭ କ୍ରିୟାଗୁଡ଼ିକ ଅଛି, ଏଥିର ଭାଷା ଯେପରି ଶୃଙ୍ଖଲ୍ୟ ନିବନ୍ଧନ ଅସ୍ପଷ୍ଟ ବା ଅବୋଧ ଓ ଗ୍ରାମ୍ୟ ବର୍ଣ୍ଣନା ତାଦୃଶ ଅଶ୍ଳୀଳ ଏବଂ ଲେଖା ବା ଲିଖିତ ବିଷୟ ସେହିପରି ବିଚାରଶୂନ୍ୟ ଓ ଅସଙ୍ଗତ ।

ଯୌବନ ଉପସ୍ଥିତ ହେଲେ ଲୋକର ଯେପରି ସମଗ୍ର ଜୀବନର ଶକ୍ତି ନବୀନ ଭାବରେ ବିକଶିତ ହୁଏ, ହୃଦୟରେ ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦିର ସଞ୍ଚାର ହୁଏ ; ଏହାର ଦ୍ୱିତୀୟଭାଗରେ ସେହିପରି ଯୌବନ-ସୁଲଭଗୁଣ ପ୍ରତିଫଳିତ ହୋଇଅଛି । ଏହି ଅଂଶର ଭାବ ଯେପରି ମାର୍ଜିତ ଏବଂ ବିଷୟ ବୀରରସରେ ଉର୍ଜସ୍ୱଳ, ଭାଷା ମଧ୍ୟ ସେହିପରି ଓଜସ୍ୱିନୀ । ଯଥାର୍ଥରେ କବିଙ୍କର ପ୍ରତିଭା ଏହି ଅଂଶରେ ପୂର୍ଣ୍ଣ ବିକାଶ ପ୍ରାପ୍ତ ହୋଇଅଛି ।

ବାର୍ଦ୍ଧକ୍ୟରେ ମନୁଷ୍ୟର ସମସ୍ତ ଶକ୍ତି ହ୍ରାସ ପ୍ରାପ୍ତ ହୁଏ ଏବଂ ସେହି ଧର୍ମରେ ମତି ଦୃଢ଼ୀଭୂତ ହୋଇଯାଏ ; ଅତ୍ରମଧ୍ୟ ଶରୀର ଜରା-ବ୍ୟାଧିରେ ଜୀର୍ଣ୍ଣତର ହେବାକୁ ବସେ, ନିତ୍ୟନୈମିତ୍ତିକ କୌଣସି ବିଷୟରେ ଦୃଢ଼ତା ରହେ ନାହିଁ । ମହାଭାରତର ପ୍ରୋକ୍ତ ତୃତୀୟ ଭାଗରେ ଆମ୍ଭେମାନେ ଉଲ୍ଲିଖିତ ଅବସ୍ଥା ପ୍ରତ୍ୟକ୍ଷ କରୁଁ । ଏଥିରେ ଭାଷାର ଓଜଃ ନାହିଁ କି ବିଷୟର ପୂର୍ଣ୍ଣତା ନାହିଁ କିମ୍ବା ଲେଖାର କୌଣସି କ୍ରମ ନାହିଁ । ଅଛି କେବଳ ବାର୍ଦ୍ଧକ୍ୟୋଚିତ କେତେକ ଧର୍ମ କଥା । ଅଶ୍ଳୀଳତାହାସ୍ୟ ତାହାର ମଧ୍ୟ ସ୍ଥଳେ ସ୍ଥଳେ ସ୍ଖଳନ ଘଟି-

ଅଛି । ଲେଖାରୁ ଲେଖକଙ୍କୁ ଜାଣିବାକୁ ହେଲେ ପାଠକ ଅନୁସନ୍ଧି-ସୁରେ ଏହା କହିବାକୁ ସମର୍ଥ ହେବେ ଯେ, ଏହି ଭିନ୍ନ ଭିନ୍ନ ଲେଖକ ଭିନ୍ନ ଭିନ୍ନ, ସେ ଯାହାହେଉ ସ୍ଥୂଳରେ ଏତକ କୁହାଯାଇ ପାରେ ଯେ, ପ୍ରାଚୀନ କବିମାନଙ୍କ ଭାଷାମଧ୍ୟରେ ଶାରଳାଦାସଙ୍କର ଭାଷା ଓଜସ୍ୱିନୀ । ତାଙ୍କର ବୀର-ରସର ଭାଷା ଆଧୁନିକ କବିଙ୍କ ତାଦୃଶ ଭାଷା ଅପେକ୍ଷା କୌଣସି ଅଂଶରେ ହୀନ ନୁହେଁ । ସେ ଭାଷା ବହୁ ଶତବର୍ଷ ପୂର୍ବର ହେଲେହେଁ ଅନେକ ସ୍ଥଳରେ ଅବିକଳ ଆଧୁନିକ ଭାଷାପ୍ରାୟ ଜଣାଯାଏ । ଏଠାରେ ଅଜ୍ ସେଥିର ଆଲୋଚନା ନ କରି, ଆଦି କବିଙ୍କ ଭାଷା ସହିତ ଆଧୁନିକ କବିଙ୍କର ଭାଷାର ତପରି ମେଳ ଅଛି ତାହାର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଉଅଛି ।

ବନପର୍ବରେ— ( ଦ୍ରୌପଦୀ । )

ମତେ ସଭାରେ କୁରୁଏ ଦେଲେ ଅପମାନ ।
କେଶ ଧରି ମୋର ନେଲା ଦୁଷ୍ଟ ଦୁଃଶାସନ ।
ଅଣନ୍ତେ ଚରଣ ମୋର ନ ପଡ଼ଇ ତଳ ।
ଆକର୍ଷି ଶିର ଛିଣ୍ଡିଲା ଦୁଃଶା ମୋର ବାଳ ।
ସେହି ଦିନୁ କେଶ ମୋର ନ କଲି ବନ୍ଧନ ।
ସେ ଭୁଜ ଦୁଃଶାର ଉପାଡ଼ିବେ ଭୀମସେନ ।
ତାହାର ରୁଧିରେ ମୋର କେଶ ପଖାଳିବି ।
ତେବେ ମୁଁ କେଶ ବନ୍ଧନ କରିବି, କେଶବ ।

ପୃ ୨୦୭ ।

କର୍ଣ୍ଣପର୍ବରେ—ନିର୍ଦ୍ଦୟ ନିରପେକ୍ଷ ଅଟଇ ଏ ଚଣ୍ଡାଳ
ଅନ୍ତଃପୁରେ ପଶି ଯେ ଧଇଲା ମୋର ବାଳ ।
ଅନ୍ତଃପୁରୁ ଆଣିଲାଯେ ଧରି ମୋତେ ବଳେ
ଅଣନ୍ତେ ଚରଣ ମୋର ନ ଲାଗିଲା ତଳେ ।

ଦ୍ରୌପଦୀର ମୁଖରୁ ଏସନ ବାକ୍ୟ ଶୁଣି
ଗର୍ଜିଣ ଉଠିଲେ ଭୀମ ମତ୍ତସିଂହ ଜିଣି ।
ଓଷ୍ଠେ ଦନ୍ତ ଚାପି ଗର୍ଜେ ପବନ ଅତ୍ମଜ
ଆକର୍ଷି ଧରିଲେ ଦୁଃଶାର ଡାହାଣ ଭୁଜ ।
ବୁଲାଇ ଭୁଜ ଯେ ଆକାଶକୁ ଦେଲେ ଫିଙ୍ଗି
ଅନ୍ତରୀକ୍ଷେ ଶେଣପକ୍ଷୀ ଧରିଲେ ତା ବେଗି ।
ପୁଣି ବାମଭୁଜ ଭୀମ ଉପାଡିଲେ ବଳେ
ଏ ଭୁଜେ ଧର୍ମଙ୍କୁ ବସାଇଲୁ ସଭାତଳେ ।
(ସହଦେବ) ତୁ ଯେ ବାସୁଦେବ ପ୍ରଭୁ ଜଗଜ୍ଜନବନ୍ଧୁ
ଏ ବଡ଼ ବିଚିତ୍ର ଦେବ ଜାଣୁ ଜାଣୁ କାନ୍ଦୁ ।
ତୁ ଦେବ ଚେତନା ଯାଇ କହୁଅ ତାହାଙ୍କୁ
ଶତଶୃଙ୍ଗ ବାଦ୍ୟକାର ଶୁଭୁ ଯେ ଭୀମଙ୍କୁ ।
ଏଣେ ପାଞ୍ଚଜନ୍ୟ ଧରି ଫୁଙ୍କିଲେ ଗୋବିନ୍ଦ
ଶତଶୃଙ୍ଗ ଶତଶୃଙ୍ଗ ଉଠେ ବଜ୍ର ନାଦ ।
ଶତଶୃଙ୍ଗଙ୍କୁ ସ୍ମରଣା କଲେ ଯହୁଁ ଭୀମ
ଏକୋତ୍ତର ସିଂହର ହୋଇଲେ ପରାକ୍ରମ । ପୁ
(ଭୀମ) ପାରିଲେ ଏହାକୁ ରକ୍ଷା କର ଦେବଇନ୍ଦ୍ର ।
ସଞ୍ଜୀବନୀ ନାଥ ତୁହି ଅଟୁ ହେ କୃତାନ୍ତ
ପାରିଲେ ଦୁଃଶାସନକୁ ରଖ ଜଗନ୍ନାଥ ।
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଇନ୍ଦ୍ର ଅଗ୍ନି ଆଦିକରି
ରଣ ସ୍ଥଳେ ନିକ୍ତୁ କେହୁ କରେ ଶସ୍ତ୍ର ଧରି ।
କାଳଚକ୍ର ହ୍ରାଏକ ବୁଲାଏ ବେନ ଅଖି
ଇନ୍ଦ୍ର ଭୁବନ ଲୋକେ କମ୍ପିଲେ ତାହା ଦେଖି—
ରେ ରେ ଦୁଃଶା ତୋତେ କେହୁ ନ ପାରିଲେ ରଖି
ପୁଣି କୋପେ ପାତାଳକୁ ଗ୍ରହିଁଲେ ନିରେଖି ।

ପୁଣି ଗର୍ଜି ବୋଲେ ଅରେ ଅରେ କଉରବ
କେ ପାରୁଛ ରକ୍ଷା କର ଦୁଃଶାସନ ଜୀବ । ପୃ ୩୩

(ଅର୍ଜୁନ) ସମସ୍ତ ପ୍ରଭିଜ୍ଞା ମୁଁ ସହିଲି ବାସୁଦେବ
ତୋହର ଅବଜ୍ଞା କେ ଦେବ ବହି ସହିବ ।

(କୃଷ୍ଣ) ତାହାକୁ କରୁ ତୁ କୋପ ଅହୋ ଫାଲଗୁନ
ଯାର ନାମେ କମ୍ପମାନ ଧ୍ରୁବ ସୁର ଜନ । ପୃ ୩୪

(ଭୀମ) ଭଲ କର ଦେଖ ମୋର ଭାଇ ମୁଖ ଗୋଟି
ଗୁଣବନ୍ତ ପୁରୁଷ ଏ ଅଟେ ଧାର୍ତ୍ତିରାଷ୍ଟ୍ରି—
ମହା ଅନଳ ଭେଦ ଏ ଜାତ ଯାଜ୍ଞସେନୀ ।
ତୁ ଖଳ ପାମର ରେ ଧରିଲୁ ତାର କେଶ
ସଭା ତଳେ ନେଇ ପୁଣି କଲୁ ଯେ ବିବସ୍ତ୍ର ।
ଅନେକ ଭର୍ତ୍ସନା କଲୁ ସତୀ ନନ୍ଦେ ଅଣି
ଆକର୍ଷି କେଶ ଏହାର ଝିଙ୍କିଥିଲୁ ପୁଣି ।
ଆଜ ଦୁଃଶାସନ ଉପାଡ଼ିବି ତୋର କର
ପାଞ୍ଚାଳୀର ଶିରେ ନେଇ ଦେବଇଁ ରୁଧିର । ପୃ ୩୫

ଥରୁ ଅଧିକ ଉଦ୍ଧାରର ପ୍ରୟୋଜନ ନାହିଁ । ଯେଉଁମାନେ ସ୍ୱର୍ଗୀୟ ରାଧୃ କବିଙ୍କର 'ବେଣୀସଂହାର' ପାଠ କରିଅଛନ୍ତି ସେମାନେ କର୍ତ୍ତୃ ପକ୍ଷର ଏହି ଅଂଶ ଦେଖିଲେ ମନେ କରିବେ ଯେ, ପ୍ରାୟ ଏକା ଭାଷା, ଏକା ଭାବ ଏବଂ ଏକ ଛନ୍ଦ । କେବଳ ପ୍ରଭେଦ ଏହି ଯେ ମଧ୍ୟେ ରାଧୃ କବିଙ୍କ ଭାବ ସ୍ୱତନ୍ତ୍ରସମ୍ପନ୍ନ ; ଭାଷା ମାର୍ଜିତ ଏବଂ ଛନ୍ଦଦୋଷ ବର୍ଜିତ ।

ଧର୍ମାଗ୍ରରେ ତୁମ୍ଭେ ବର୍ଣ୍ଣି ସର୍ବକାଳେ ପୁଣ ।
ଭୀମକୁ ବସାଇ ଖୁଆଇଲ ବିଷ ଲଡୁ
ଖାଇ ବିଷ ମରନ୍ତି ତୁମ୍ଭର ଧର୍ମ ପୋଡୁ ।

ଯାବତ କାଳରେ ତୁମ୍ଭେ ଚଳ ଧର୍ମ ବାଟେ
ଘର ବଳ କଉ ଗୁଆଘୃତ ଛଣପଟେ ।
ବଳଲେ ପଶିଲେ ଯେ ବଳରେ ପଞ୍ଚଭାଇ
ଏମାନ ତୁମ୍ଭର କଣ ଅଧର୍ମ ନୁହଇ ?
ଚଉଦ ବରଷ ଅଟେ ସୁଭଦ୍ରାର ପୁତ୍ର
ନ ଜାଣି ସମରେ ଯେ ପଶିଲା ଅଭିମନ୍ୟୁ ।
ଧର୍ମଯୁଦ୍ଧେ ମାରି ନ ପାରିଲ ଯେତେବେଳ
ବେଢ଼ି କରି ମାରି ବୋଲି ସର୍ବେ କଲ ଗୋଳ ।

ଭଂ ; ଦ ପୃ ୪୧ ।

ଇତ୍ୟାଦି ପଂକ୍ତି କଣ୍ଠପଦ୍ମର ଅନ୍ତ୍ରାସ ଭକ୍ତ କବି ମଧୁସୂଦନ
'କର୍ଣ୍ଣବଧରେ' ଲକ୍ଷିତ ହୁଏ ନାହିଁ କି ?

ସ୍ୱର୍ଗାରୋହଣ ପର୍ବରେ—

ଅନେକ କଷ୍ଟରେ ପ୍ରଜା କରିବେ ଯେ କୃଷି
ନାନା ଫାନ୍ଦ ପାତି ରାଜା ହେବେ ମିଥ୍ୟାଭାଷୀ ।
ପ୍ରଜାଠାରୁ ସବୁ ଡଣ୍ଡି ନେବେ ରାଜାମାନେ
ମହା ଦୁଃଖ ପାଇ କଷ୍ଟୀ ହେବେ ପ୍ରଜାମାନେ ।
ବ୍ରାହ୍ମଣ ଦେବତାଆଦି ପୂଜ୍ୟ ଯେ ପଦାର୍ଥ
ରାଜା ଦୋଷ ହେତୁ ସର୍ବେ ହୋଇବେ ଅନାଥ ।
ଶୂଦ୍ରଙ୍କୁ ବ୍ରାହ୍ମଣେ ଯେ ମାରିବେ ଭଳହସ୍ତେ
ନିଜ ମତ ତେଜିଣ ସେ ଅନ୍ୟ ଭାବ ମତେ ।
କୁଳାଚାର ଛାଡ଼ି ଦ୍ୱିଜେ ହେବେ ଅନାଚାରୀ
ରାଜ ସେବା କରିବେ ସେ ଯେସର ବେଗାରୀ । (୧)

---

(୧) 'ବେଗାରି' ଶବ୍ଦ ଇଂରେଜଙ୍କ ଅମଳ ଏବଂ ଆଧୁନିକ, ଉକ୍ତାଂଶରୁ ଏ ପଂକ୍ତି ଏବଂ ଅନ୍ୟ କେତୋଟି ପଂକ୍ତି ଦେଖିବାରୁ ଅନୁମାନ ହୁଏ ଏହି ଅଂଶ ପ୍ରକ୍ଷିପ୍ତ । ଯେଉଁ ବ୍ୟକ୍ତି ଏ ସାହସ କରିଛନ୍ତି; ସେ ଯେ ଶବ୍ଦପ୍ରୟୋଗରେ ଦଗ ଏଥିରେ ସନ୍ଦେହ ନାହିଁ ।

ଏହିପରି ଅନାଚାର ବ୍ରାହ୍ମଣେ କରିବେ
ବ୍ରାହ୍ମଣ ମାରିଲେ କେହି ହତ୍ୟା ନ ଘେନିବେ ।
ବ୍ରାହ୍ମଣ ଚଣ୍ଡାଳ ଆଦି ବସିବେ ଏକତ୍ରେ
ମ୍ଳେଚ୍ଛଲୋକେ ପୂଜିବେ ସେ ମଦସ୍ୱର ଅର୍ଥେ ।
ପରଧନ ଚୋରି କରି ମରିବେ ଯେ ପ୍ରାଣୀ
ଅବିଚାର କରି ରାଜା ପକାଇବେ ହାଣି ।
ସବୁଆଡ଼େ ଗୋଳମାଳ ହେବ ଏକଯୋଗେ
ଅନାଚାରୀ ହେବେ ଲୋକେ ଯାଇଣ ଅମାର୍ଗେ ।
ଅନେକ ଅନ୍ୟାୟ ଦେବ ହେବ କଳିଯୁଗେ

ପୃ ୧୧ । ୧୬

ସହଦେବ ମୁଖ ନିର୍ଗତ ଏହି ଉକ୍ତିଗୁଡ଼ିକ ସ୍ୱର୍ଗୀୟ କବିବରଙ୍କ 'ହାଯାତ୍ରାରେ' ଅଗ୍ନିମୁଖୋଦ୍ଗୀର୍ଣ୍ଣ ଭବିଷ୍ୟଦ୍ ବାଣୀର ଅଗ୍ରଜା ନୁହେ ? ଅବଶ୍ୟ ସେଥିରେ ରାୟ କବିଙ୍କ ପ୍ରତିଭାର ପ୍ରଭାବ ଯଥେଷ୍ଟ ଦେଖାଯାଇଅଛି, ତଥାପି ତାହା ଯେ ଏତଦ୍ଦୃଷ୍ଟିରେ ଉଦ୍ଭାବିତ ହା କଣ୍ଠରେ ଉଚ୍ଚାରଣ କରିବାକୁ ବୋଧହୁଏ କେହି କୁଣ୍ଠିତ ହେବେ ନାହିଁ ।

ଉପମା ଭାବବିଶଦୀକରଣର ଗୋଟିଏ ପ୍ରଧାନ ସାଧନ । ଅନେକ ଳରେ କବିଙ୍କର ଉପମାଗୁଡ଼ିକ ବଡ଼ ସୁସଙ୍ଗତ । ଯୁଦ୍ଧବର୍ଣ୍ଣନାରେ ଯେଉଁ ଉପମାବଳୀର ଅଗମ ହୋଇଅଛି ତନ୍ମଧ୍ୟରୁ ଅଧିକାଂଶ ଚୀନ । କିନ୍ତୁ ଅନେକସ୍ଥ ପ୍ରତିଭାବାନ୍ କବି ପ୍ରାଚୀନ ପଦ୍ଧତିର ପେକ୍ଷା ନ ରଖି ଆପଣା ଅବେକ୍ଷଣ ଅନୁସାରେ ନାନା ଉପମାସୃଷ୍ଟି ରିଅଛନ୍ତି । ସେ ସମସ୍ତ ପ୍ରଦର୍ଶନ କରିବାର ସମ୍ଭାବନା ଏବଂ ସ୍ଥାନ ଠାରେ ନାହିଁ । ତଳେ ଦୁଇ ତିନୋଟି ମାତ୍ର ଅବାନ୍ତର ନିମ୍ନରେ ଇ ଉଦ୍ଧୃତ ହେଲା ।

୧—ଖଗବର ଚଞ୍ଚୁ ପ୍ରାଏ ନାସାର ଯେ ଖେଳା
ଗୁଞ୍ଜଫଳ ଜିଣି ଜ୍ୱଳନ୍ତ ବେନ ଡୋଳା
ରଙ୍ଗ ଅଧର ଲାଭ ପ୍ରାଏ ଢଳପାଉ କାନ୍ତି
ଘଟ୍ଟଣ ପୋଦଲା ଜିଣି ଅଙ୍ଗୁଷ୍ଠି ଦଶନ୍ତି । ବ, ପ, ପୃ ୭
ସେବତି ପାଖୁଡ଼ା ପ୍ରାଏ ତହୁଁ କରରୁହ ।

ଯୁଦ୍ଧରେ ଶରପାତ ଏବଂ ଶର ଯୋଗେ ଶିରଃପାତାଦିର ବର୍ଣ୍ଣନାରେ କବିଙ୍କର ଉପମା ଯଥାଯଥ ହୋଇଅଛି ।

ଯଥା ୧— ଶର ମାରନ୍ତି ଯେସନେ ବରଷଇ ପାଣି
ଝଲକଇ ଅସ୍ତ୍ର ବିଜୁଳିର ତେଜ ଜିଣି ।
୨— ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲା
ପଳାଶ ଗଛ କି ଫୁଲେ ମଣ୍ଡିତ ହୋଇଲା ।
୩— ଯେସନେ ଉଲମଞ୍ଜି ବୁଣଇ କୃଷିକାରି
ପଡ଼ନ୍ତି ପାଦାନ୍ତବଳ ସଷ୍ପି ନ ପାରି । ଦ୍ରୋ: ପ:
୪— ଯେସନେ କଦଳୀ ବନ ପଡ଼େ ବାତାଘାତେ
ଏକ ଉପରେ ଅନେକ ପଡ଼େ ଶରପାତେ । ସ: ପ:
୫— ମହାବାତେ ଯେସନ ପକ୍ୱଫଳ ଝଡ଼ନ୍ତି
ଏକନାଶ୍ୱରକେ ବନ୍ଧୁ ସ୍ୱଜନ ଲୋଟନ୍ତି ।
ଗମ୍ଭୀର ଜଳରେ ଯେଉଁପରି ଭାସେ ଭେଳା
ଗଜ ଅଶ୍ୱ ରଥ ରକ୍ତେ ତଥା ମେଳାମେଳା ।
—ଦ୍ରୋ, ପ ।

ଶୋଷୋକ୍ତ ଉପମାଟି ସ୍ୱପ୍ନ କବିଙ୍କର ନମ୍ନୋକ୍ତ ଉପମା ଅପେକ୍ଷା ଅଧିକ ସଙ୍ଗତ ଏବଂ ସୁନ୍ଦର ନୁହେଁ କି ?

ଝଡ଼ିଲା ଯବନ ମୁଣ୍ଡ ସେ କୃପାଣ ଘାତେ
ଶତ ଶତ ପକ୍ୱପର୍ଣ୍ଣ ଶୀତାନ୍ତେ ଯେସନ,
କୁଟିଳ ଦାଢେ ଅବା ପକ୍ୱଶସ୍ୟାବଳୀ
ମହାଯାତ୍ରା ୭ମ ସର୍ଗ

ନ୍ୟ ଉପମା,—ବସାଭଗ୍ନେ ପକ୍ଷୀ ଏ ପଳାନ୍ତି ଯେସନେ ଡରେ
କେ ରହି ନ ପାରେ ନାଦଘୋଷର ଛମୁରେ ।
ବଦନ୍ତି ଅଗସ୍ତି ଯେଉଁପରି କୁମ୍ଭିକାରୀ,
ବଳଦ ହଜାଇ ଏଣେ ତେଣେ ଖୋଜବୁଲି
ଭୀଷ୍ମଙ୍କ ଅଭାବେ ରାଜା ହେଲେ ସେହିପରି ।
ଦ୍ରୋ, ପ ।

ଶଲ୍ୟଣିର ପ୍ରାୟେ ଭୁ ହୋଇଲୁ ଭୀମସେନ ।
ଗୁଣଛାଡ଼ି କେବଳ ବହୁଛୁ ଅବଗୁଣ । ଶଲ୍ୟ, ପ ।

ବୀର ଚରିତ୍ର ଚିତ୍ରଣରେ କବି ଏକପ୍ରକାରେ ସିଦ୍ଧ ହସ୍ତ । ବର୍ଣ୍ଣନା ଲୌକିକ ଏବଂ ଅତିଶୟୋକ୍ତି ବହୁଳ ହେଲେହେଁ କୌଣସିଠାରେ ସ୍ଥ ବୀରମାନଙ୍କର ବୀର ଧର୍ମର ଖର୍ବତା ସମ୍ପାଦନ କରି ନାହାନ୍ତି ।

ଯେଉଁଠାରେ କେବଳ ବୀରତ୍ୱର କଥା ନାହିଁ ସେ

ିକ ଚିତ୍ରଣ । ସ୍ଥଳର ଚିତ୍ର ଉନ୍ମେଷରେ କବି କଷ୍ଟିକ୍, ଅସମର୍ଥ ହୋଇଅଛନ୍ତି । ତେଣୁ ସେ ଧର୍ମବୀର ଯୁଧିଷ୍ଠିରଙ୍କର ଧର୍ମପ୍ରାଣତା, ।ମ୍ଭୀର୍ଯ୍ୟ ଓ ସତ୍ୟନିଷ୍ଠତା ସର୍ବତ୍ର ଅକ୍ଷୁଣ୍ଣ ରଖି ପାରି ନାହାନ୍ତି । ଶଲ୍ୟ-ର୍ବରେ ଯୁଧିଷ୍ଠିରଙ୍କର ବୀରତ୍ୱ ପ୍ରଶସ୍ତଭାବରେ ଚିତ୍ରିତ ହୋଇଥିଲେ-ହିଁ ବିରାଟ ପର୍ବରେ ଅଜ୍ଞାତ ବାସକାଳୀନ ତାଙ୍କର ଯେଉଁ ଆତ୍ମପରି-ୟ ପ୍ରଦତ୍ତ ହୋଇଅଛି, ସେଥିରୁ ତାହାଙ୍କୁ ମିଥ୍ୟାବାଦୀ ବୋଲି ।ଶିଛି ହୁଏ । କିନ୍ତୁ ମୂଳମହାଭାରତରେ ଏପରି ପରିଚୟ ପ୍ରଦାନ ।ାହିଁ । ତତ୍ପରବର୍ତ୍ତୀ କୃଷ୍ଣସିଂହ ମଧ୍ୟ ଏ ସ୍ଥଳରେ ସାବଧାନଥାଇ ୍ୟର୍ଥ ବ୍ୟଞ୍ଜକ ଶବ୍ଦଦ୍ୱାରା ସତ୍ୟନିଷ୍ଠତା ସୁରକ୍ଷିତ ରଖିଅଛନ୍ତି । କବିଙ୍କର ୀମ କେବଳ ମହାବଳଶାଳୀ ନୁହନ୍ତି, ଅତି ଉଦ୍ଧତ, ଚପଳ ଏବ ।ଲୌକିକଶକ୍ତିସମ୍ପନ୍ନ । ଭିନ୍ନ ଅବସ୍ଥାରେ ମଧ୍ୟ ସେହି ଔଦ୍ଧତ୍ୟ ଓ ୃପଳ ବାଳକୋଚିତ ରହିଅଛି । ଶୌର୍ଯ୍ୟ ଏବଂ ଔଦାର୍ଯ୍ୟରେ ମହାବୀର ୀର୍ତ୍ତିଅର୍ଜୁନଙ୍କୁ ଆଦର୍ଶ ରଖିଅଛନ୍ତି । ଏ ଉଭୟଙ୍କ ଚରିତ୍ରକୁ ଉନ୍ନତ

କରିବାରେ କବି ଯଥେଷ୍ଟ ପ୍ରୟାସ ପାଇଛନ୍ତି । ପ୍ରତିସ୍ଥଳରେ ମହାବ
ଅର୍ଜୁନଙ୍କର ଶୌର୍ଯ୍ୟସହ ଔଦାର୍ଯ୍ୟ ଅତି ଉତ୍କୃଷ୍ଟ ବର୍ଣ୍ଣନରେ ଚିତ୍ରି
କବିଙ୍କର ନକୁଳ ମଧ୍ୟ ମହାବୀର ଏବଂ ସହଦେବ ସୁବୁଦ୍ଧି ମଣ୍ଡ
ରଣକୁଶଳ । ଏହି ପଞ୍ଚପାଣ୍ଡବଙ୍କ ଚରିତ୍ର ମଧ୍ୟରୁ ଭୀମଙ୍କ ଚରିତ୍ର
ଅଲୌକିକତା ଏବଂ ଅତିଶୟୋକ୍ତିର ମାତ୍ରା ସର୍ବାପେକ୍ଷା ଅଧିକ
ପାଣ୍ଡବପକ୍ଷପାତୀ ଯଦୁବଂଶାବତଂସ ଶ୍ରୀକୃଷ୍ଣଙ୍କୁ କବି ଯେ ସର୍ବଜ୍ଞ କେ
ଅଲୌକିକଶକ୍ତିଶାଳୀ ଏବଂ ଦେବତାରୂପେ ଚିତ୍ରିତ କରିଅଛ
ତାହା ନୁହେ, ଅନେକ ସ୍ଥଳରେ ସେ ତାହାଙ୍କୁ ଅତି କୁଟିଳ, ଷ୍ଟା
ନ୍ୟତ ଏବଂ କୁଚକ୍ରୀ ପୁରୁଷରୂପରେ ଦଣ୍ଡାୟମାନ କରିଅଛନ୍ତି । ସ୍ଥାନେ
ସ୍ଥାନେ କୃଷ୍ଣଙ୍କର ମହିମା ବିଶେଷ ଖର୍ବୀକୃତ ଏବଂ ମ୍ଳାନବର୍ଣ୍ଣ
ଚିତ୍ରିତ ହୋଇଅଛି, ତାହାର ଗୋଟିଏ ଦୃଷ୍ଟାନ୍ତ ଦେଉ
ଦ୍ରୋଣବଧ ପର୍ବରେ କବି ଲେଖିଅଛନ୍ତି ;—

ଧୃଷ୍ଟଦ୍ୟୁମ୍ନ ଥିଲା ଯୁଧିଷ୍ଠିରଙ୍କ ପଛକତି ।
ନୟନଠାରେ ତାହାକୁ ଦେଲେକ ଶ୍ରୀପତି ।
ପିତା ଶତ୍ରୁ ଅଟଇ ଗୁରୁ ଦ୍ରୋଣ ।
ବିଷ ପାଞ୍ଚ ଏହାକୁ କୃପାଣ ଯେନ ହାଣ । ପୃ ୧୦୬

କିନ୍ତୁ ମୂଳ ମହାଭାରତରେ ଏହା ଅଛି ଯେ ଆଚାର୍ଯ୍ୟ ଦ୍ରୋ
ଯୁଧିଷ୍ଠିରଙ୍କ ବାକ୍ୟରେ ଶସ୍ତ୍ର ତ୍ୟାଗ ପୂର୍ବକ ରଥରେ ଯୋଗାସ
ହୋଇଥିଲେ ଧୃଷ୍ଟଦ୍ୟୁମ୍ନ ଏହି ଛିଦ୍ର ଦର୍ଶନରେ ସଶର* ହୋଇ ତାହ

* ଉତ୍ସୃଜ୍ୟ ଚ ରଣେ ଶସ୍ତ୍ରଂ ରଥୋପସ୍ଥେ ନିବେଶ୍ୟ ଚ
ଅଭୟଂ ସର୍ବଭୂତାନାଂ ପ୍ରଦଦୌମ ଯୋଗମୀୟିବାନ୍ ।
ତସ୍ୟ ତଚ୍ଛିଦ୍ରମାଜ୍ଞାୟ ଧୃଷ୍ଟଦ୍ୟୁମ୍ନଃ ପ୍ରତାପବାନ୍
ସଶରଂ ତଦ୍‌ଧନୁର୍ଘୋରଂ ସନ୍ନ୍ୟସ୍ୟାଥ ରଥେ ତତଃ
ଖଡ୍ଗୀ ରଥାଦବପ୍ଲୁତ୍ୟ ସହସା ଦ୍ରୋଣ ମଭ୍ୟଗାତ୍ ।
ଧିକ୍‌କୃତଃ ପାର୍ଷତସ୍ତତ୍ର ସର୍ବଭୂତୈଃ ପରାମୃଷ୍ଟ
ତସ୍ୟ ମୂର୍ଦ୍ଧାନ ମାଲମ୍ବ୍ୟ ଗତସତ୍ତ୍ୱସ୍ୟ ଦେହିନଃ ।
ଦ୍ରୋ, ପ, ୧୦୧

[illegible] କଲ । ଦ୍ରୋଣ ଯୋଗସ୍ଥ ଥାଇ ଜ୍ୟୋତିର୍ମୟ ବ୍ରହ୍ମ ମଧ୍ୟରେ ପ୍ରବ[illegible] ହୋଇଗଲେ । ଧୃଷ୍ଟଦ୍ୟୁମ୍ନ ତାଙ୍କର ସେହି ମୃତ ଦେହ[illegible]ନି ମାତ୍ର କରି ଅଣିଥିଲେ । ସେଥିରେ କୃଷ୍ଣଙ୍କର କୌଣସି କଥା [illegible]ହିଁ । ଏହା ତୁଳନାରେ କବିଙ୍କର ଏ ସ୍ଥଳରେ ଗୁରୁହନ୍ତା ଧୃଷ୍ଟଦ୍ୟୁମ୍ନ ପ୍ରତି ଅର୍ଜୁନଙ୍କର ମହାକୋପ ଅବଶ୍ୟ ତାହାଙ୍କର ଚରିତ୍ରର ଉପଯୁକ୍ତ ହୋଇଅଛି । କିନ୍ତୁ କୃଷ୍ଣଚରିତ୍ରକୁ କବି ନାନା ସ୍ଥାନରେ ଅତି ହୀନ କରି ପକାଇ ଅଛନ୍ତି । ଉକ୍ତ ପର୍ବରେ କବି ମହାବୀର ବାଳକ ଅଭିମନ୍ୟୁର ବୀରତ୍ୱକୁ ପ୍ରଶସ୍ତତର ବର୍ଣ୍ଣରେ ଚିତ୍ରିତ କରି ଅଛନ୍ତି । ଏଥିରେ ଅବଶ୍ୟ କବି କୃତୀ । କବିଙ୍କର ଅଶ୍ୱତ୍ଥାମା ମହାବୀର ଏବଂ ରଣବିଶାରଦ ସତ୍ୟ, କିନ୍ତୁ ନରଘାତୀ ଚଣ୍ଡପ୍ରକୃତି । ଏହି ସୀମାରହିତ ନୃଶଂସତା ବ୍ରାହ୍ମଣୋଚିତ ହୋଇ ନାହିଁ । ଦୁର୍ଯ୍ୟୋଧନ ଦୁଃଶାସନାଦିଙ୍କର ଚରିତ୍ର ଅସଙ୍ଗତ ହୋଇ ନାହିଁ । ଗଦ୍ୟ ରଚନାରୀତିରେ କବିଙ୍କର ହସ୍ତ ଯେପରି ଅଭ୍ୟସ୍ତ ସେପରି ଅନ୍ୟତ୍ର ନୁହେ । ନାଟ୍ୟ ଚରିତ୍ର ଉନ୍ମୀଳନରେ କବିଙ୍କର ଲେଖନୀ ଏକାନ୍ତ ଦୁର୍ବଳ । କବି କୁନ୍ତୀ ଦ୍ରୌପଦୀ ସୁଭଦ୍ରା ସତ୍ୟଭାମା ପ୍ରଭୃତିଙ୍କୁ ଅତି ସାମାନ୍ୟ ନାରୀରୂପରେ ପ୍ରଦର୍ଶନ କରି ଅଛନ୍ତି । ମଧ୍ୟରେ କେତେ ସୁଭଦ୍ରା ଓ ସତ୍ୟଭାମାର କଥୋପକଥନ ବୀରାଙ୍ଗନାର ଉପଯୋଗୀ ହୋଇ ନାହିଁ, ବରଂ ତାହା ଅତି ସାମାନ୍ୟ ନାରୀ ସୁଲଭ । କବିଙ୍କର କୁନ୍ତୀ ଧର୍ମଜ୍ଞ ଏବଂ ବୀରପ୍ରସବିନୀ ସତ୍ୟ, କିନ୍ତୁ ସ୍ଥାନେ ସ୍ଥାନେ କବି ତାହାଙ୍କୁ କାନ୍ଦଣାପ୍ରିୟ କରି ସମସ୍ତ ଗାମ୍ଭୀର୍ଯ୍ୟ ନଷ୍ଟ କରି ପକାଇଛନ୍ତି, କବିଙ୍କର ଦ୍ରୌପଦୀ ପତିବ୍ରତା ହେଲେହେଁ ବଡ଼ ଉଗ୍ରସ୍ୱଭାବା । ବନପର୍ବରେ ତାଙ୍କର କର୍କଶବ୍ୟବହାର ଏବଂ କେଶସଂହାର ସ୍ଥଳରେ ଭୀଷଣୀକୃତ ଦେଖିଲେ ଦ୍ରୌପଦୀଙ୍କ ପ୍ରତି ଘୃଣାର ଉଦ୍ରେକ ହୁଏ । ତାହା ବ୍ୟତୀତ କବି ଦ୍ରୌପଦୀଙ୍କୁ ସ୍ଥାନେ ପରୁଷବଚା

କାମୁକୀ ସ୍ତ୍ରୀରୂପ (୧) ବର୍ଣ୍ଣନ କରିବାକୁ ଶତ ନାହାନ୍ତି । [illegible] ପ୍ରକାର ମଳିନ ଆଦର୍ଶ ଦ୍ୱାରା ସମାଜରେ କଳଙ୍କ ବୃଦ୍ଧି ସ [illegible] ହେବ, ଅଧମ ସାହିତ୍ୟର ଲକ୍ଷଣ ଦୃଷ୍ଟିରେ ଉପେକ୍ଷଣୀୟ [illegible] ଯାଇ ଅଳ୍ପ ସମାଦରର ସାମଗ୍ରୀ । ତେବେ ପାଠକ [illegible] ନିକଟରେ ବକ୍ତବ୍ୟ ଏହି ଯେ ସେମାନେ ଯଦି ନିର୍ଦ୍ଦିଷ୍ଟ ସୂଚନା [illegible] ଧ୍ୟାନ ସ୍ଥାପନ କରି ପାଠ କରନ୍ତି ତାହାହେଲେ ଏ ଭାବର ଗ୍ରନ୍ଥ ତେତେ ଭାରବତ୍ ବୋଧ ହେବ ନାହିଁ ।

ଉପସଂହାର ସ୍ଥଳରେ ଏତିକି ମାତ୍ର କହିବାକୁ ହେବ ଯେ, ଏହି ଶାରଳାଦାସଙ୍କ ମହାଭାରତ ପ୍ରାଚୀନ ଉତ୍କଳସାହିତ୍ୟର ବିପୁଳସମ୍ପଦ। ଏଥିରେ ମହାଭାରତୀୟ ମହା ବିଷୟ ବ୍ୟତୀତ ଉତ୍କଳର କେତେକ ମୌଳିକ ତଥ୍ୟ ସଂଯୋଜିତ ଅଛି । ସେ ଗୁଡ଼ିକୁ ଅବଲମ୍ବନ କରି ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନ କରାଯାଇ ପାରେ । ଆଧୁନିକ ସାହିତ୍ୟ ସେବୀମାନଙ୍କର ଉପଜୀବ୍ୟ ବିଷୟ ମଧ୍ୟ ଏଥିରେ ଅପ୍ରଚୁର ନୁହେ । ଅତଏବ ଆଧୁନିକ ଶିକ୍ଷିତ ସମାଜକୁ ଏହା ଅନୁରୋଧ କରିବା ଅସଙ୍ଗତ ହେବ ନାହିଁ, ଯେଉଁମାନେ ଆଦି କବି ଶାରଳା ଦାସଙ୍କର ସମାଦର କରନ୍ତି, ସେମାନେ କବିଙ୍କର ଏହି ମହାଗ୍ରନ୍ଥ ଅଧ୍ୟୟନ କରି ତନ୍ମଧ୍ୟରୁ ଉତ୍କୃଷ୍ଟ ଅଂଶମାନ ଗ୍ରହଣପୂର୍ବକ ଆଧୁନିକ ରୁଚିସମ୍ମତ ଗ୍ରନ୍ଥମାନ ପ୍ରଣୟନ କରନ୍ତୁ, ପକ୍ଷାନ୍ତରେ ଯେଉଁମାନେ ଅନାଦର କରନ୍ତି, ସେମାନେ ମଧ୍ୟ ମାର୍ଜିତ ରୁଚିର ପୁସ୍ତକ ପ୍ରଣୟନ ଦ୍ୱାରା ଏଥିର ଅପକର୍ଷ ପ୍ରଦର୍ଶନ କରି ଆତ୍ମତୃପ୍ତି ସମ୍ପାଦନ କରନ୍ତୁ । ଭଗବାନଙ୍କ କୃପାରୁ ଆମ୍ଭମାନଙ୍କର ଏହି କାମନା ପୂର୍ଣ୍ଣତା ଲାଭ କରୁ ।

---

(୧) ସଭା ପ୍ରକାଶ ସ୍ଥଳରେ ।— * * ସେ ପ୍ରତ୍ୟକ୍ଷ ପଦ ଉରୁ ପୁଷ୍ଟ ଅବା ହେଲ । ସୁବେଶ ପ୍ରତ୍ୟକ୍ଷ ଦେଖି ତନୁକୁ ବଳ ଦି । ଏ ମୋ ହୃଦ ପଦ୍ମେ [illegible] ଥାନ୍ତେ ମୋହର କର୍ପୂରବଳେ ମଠ [illegible] ବ; ପ;

ସମାପ୍ତ